

## କାଳିନ୍ଦୀଚରଣ ପାଣିଗ୍ରାହୀ

ଆବିର୍ଭାବ - ୨-୭-୧୯୦୧

ତିରୋଧାନ - ୨୫-୫-୧୯୯୧

# କାଳିନ୍ଦୀଚରଣ ପାଣିଗ୍ରାହୀ

ଲେଖକ :
**ଡକ୍ଟର ଆଦିକନ୍ଦ ସାହୁ**

ପ୍ରକାଶକ :
**ଓଡ଼ିଶା ସାହିତ୍ୟ ଏକାଡେମୀ**
ସଂସ୍କୃତି ଭବନ, ଭୁବନେଶ୍ୱର- ୭୫୧୦୧୪

ମୁଦ୍ରଣ :
**ପେଜ୍‌ମେକର**
ବାପୁଜୀନଗର, ଭୁବନେଶ୍ୱର

ପ୍ରଥମ ପ୍ରକାଶ -୨୦୦୧

ମୂଲ୍ୟ : ଟ ୩୫.୦୦

**KALINDICHARAN PANIGRAHI**

Written by
**Dr. Adikanda Sahu**

Published by
**Orissa Sahitya Akademi**
Sanskruti Bhavan
Bhubaneswar - 751014

Printed at
**Pagemaker**
Bapuji Nagar, Bhubaneswar

**First Edition - 2001**

Price : **Rs. 35.00**

I.S.B.N. 81-7586-067-7

# ଅଗ୍ରଲେଖ

କାଳିନ୍ଦୀଚରଣ ମୋର ଜଣେ ପ୍ରିୟ ଲେଖକ । ତାଙ୍କ ଗଳ୍ପ, କବିତା, ଉପନ୍ୟାସ ମୋତେ ଭଲ ଲାଗେ ଓ ତାଙ୍କ ଭିତରେ ଶୈଶବର ସ୍ମୃତି ପ୍ରତି ଏକ ମଧୁର ସମ୍ମୋହନ ରହିଛି । ମାଟି ଓ ମଣିଷ ପ୍ରତି ମଧ ସେ ଅଧିକ ସମ୍ମୋହିତ । ଏହି ଅନୁଭବ ତାଙ୍କ ଗଦ୍ୟ ପଦ୍ୟରେ ଏକାନ୍ତ ଭାବବିହ୍ୱଳ ଅଭିବ୍ୟକ୍ତି ଲାଭ କରିଛି ।

ତାଙ୍କ ବିଭୋରପଣିଆ, ତାଙ୍କ ହେତୁବାଦୀ ଦୃଷ୍ଟିଭଙ୍ଗୀ ମୋତେ ଭଲ ଲାଗେ । କାଳିନ୍ଦୀଚରଣଙ୍କ ଗଳ୍ପ, ଉପନ୍ୟାସର ଗଦ୍ୟଶୈଳୀ ଓ ତାଙ୍କ କବିତାରେ ଶୈଶବପ୍ରତି ତାଙ୍କର ନିବିଡ଼ ସମ୍ମୋହନ ବିଷୟରେ ମୁଁ ପୂର୍ବରୁ ଆଲୋଚନା କରିଛି ଓ ଶେଷୋକ୍ତ ବିଷୟଟି କୋଣାର୍କର କାଳିନ୍ଦୀଚରଣ ବିଶେଷାଙ୍କରେ ପ୍ରକାଶିତ ମଧ ହୋଇଛି ।

ସାହିତ୍ୟିକ କାଳିନ୍ଦୀଚରଣଙ୍କ ଉପରେ ଏକ ପରିଚୟାତ୍ମକ ମନୋଗ୍ରାଫ୍ ରଚନା କରିବା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ପ୍ରସ୍ତାବକୁ ମୁଁ ସାଦରେ ଗ୍ରହଣ କରିଥିଲି ଓ ଉକ୍ତ ପୁସ୍ତିକାଟି ତା'ର ଫଳଶ୍ରୁତି ।

ଏହା ପାଠକ-ପାଠିକାଙ୍କ ଦ୍ୱାରା ସୁଖପାଠ୍ୟ ହୋଇପାରିଲେ ମୋର ଶ୍ରମ ସାର୍ଥକ ହେଲାବୋଲି ମନେକରିବି ।

ଜ୍ୟୋତିବିହାର
ସମ୍ବଲପୁର

**ଆଦିକନ୍ଦ ସାହୁ**

# ପ୍ରାଗ୍‌ଭାଷ

ଅନ୍ନଦାଶଙ୍କର, ବୈକୁଣ୍ଠନାଥ, ହରିହର, ଶରତଚନ୍ଦ୍ର ଓ କାଳିନ୍ଦୀଚରଣଙ୍କୁ ନେଇ ଗଠିତ ସେ ଦିନର ନନ୍‌ସେନ୍‌ସ କ୍ଲବ ପରବର୍ତ୍ତୀ ପର୍ଯ୍ୟାୟରେ ସବୁଜ ଯୁଗର ସ୍ଥାପନା ଦିଗରେ ନିଜର ସାମର୍ଥ୍ୟ ଜାହିର କରି ପାରିଥିଲା । ଆଜି ସେ ସବୁ ଇତିହାସ ।

କେବଳ ଗଳ୍ପ କାହିଁକି, 'ମାଟିର ମଣିଷ', 'ଲୁହାର ମଣିଷ', 'ମୁକ୍ତାଗଡ଼ର କ୍ଷୁଧା' ଭଳି ଉପନ୍ୟାସ ଲେଖି ଓଡ଼ିଶାର ସୁଧୀ ପାଠକଙ୍କ ପ୍ରଶଂସାଭାଜନ ହୋଇ ପାରିଥିବା କାଳିନ୍ଦୀଚରଣ ଯଥାର୍ଥରେ ଜଣେ ସାରସ୍ୱତ ଯୁଗ-ପୁରୁଷ ଭାବେ ଆଜିବି ପ୍ରତ୍ୟେକ ସାହିତ୍ୟପ୍ରେମୀଙ୍କ ପାଇଁ ନମସ୍ୟ । କବିତା, ପ୍ରବନ୍ଧ, ନାଟକ କ୍ଷେତ୍ରରେ ମଧ୍ୟ ତାଙ୍କ ପ୍ରଭୂତ ଅବଦାନ କାହାରିକୁ ଅବିଦିତ ନୁହେଁ । ନିଃସ୍ୱ ମଣିଷର ଅକୃତ୍ରିମ ଜୀବନଶୈଳୀ ସାଙ୍ଗକୁ ସରଳ ନିଷ୍ପାପ ପଲ୍ଲୀଜୀବନର ମାର୍ମିକ ଅଭିବ୍ୟକ୍ତି ମୁଖ୍ୟତଃ ତାଙ୍କ ସୃଷ୍ଟି-କର୍ମର ଅନ୍ତଃସ୍ୱର । ମାନବିକତାର ପୃଷ୍ଠଭୂମିରେ କାଳିନ୍ଦୀଚରଣ ଦୁନିଆଁକୁ ଖୁବ୍ ନିକଟରେ ଦେଖିଛନ୍ତି ଓ ନିଜର ବଳିଷ୍ଠ ଲେଖନୀରେ ସତ୍ୟ ଶିବ ସୁନ୍ଦରର ନିଆରାପଣକୁ ଗୁଣୀ ଜନସାଧାରଣଙ୍କୁ ଭେଟି ଦେଇଛନ୍ତି ।

ପଦ୍ମଭୂଷଣ କାଳିନ୍ଦୀଚରଣଙ୍କ ସାହିତ୍ୟକୃତି ଯଥାର୍ଥରେ କାଳଜୟୀ । 'ସବୁଜ କବିତା', 'ଛୁରୀଟିଏ ଲୋଡ଼ା', 'ମୋ କବିତା', 'ମନେ ନାହିଁ', 'କ୍ଷଣିକ ସତ୍ୟ' ଭଳି କବିତା ପୁସ୍ତକ ସାଙ୍ଗକୁ 'ଫକିରମୋହନଙ୍କ ଚରିତ୍ର ଚିତ୍ରଣ', 'ମଥୁରା ମଙ୍ଗଳ ସମାଲୋଚନା', 'ଲାବଣ୍ୟବତୀରେ ଉପେନ୍ଦ୍ର ଭଞ୍ଜ' ଭଳି ଉନ୍ନତ ସମାଲୋଚନାତ୍ମକ ପ୍ରବନ୍ଧ ଓଡ଼ିଆ ସାହିତ୍ୟରେ ପ୍ରାୟତଃ ବିରଳ କହିଲେ ଚଳେ ।

ଔପନ୍ୟାସିକଙ୍କ ନିଜ ଭାଷାରେ- ''ବରଜୁ ପଧାନ ନିଜ ଅଭିଜ୍ଞତାରୁ ଠାବ କରିଥିଲି । ଛକଡ଼ି ପରି ଗୋଟିଏ ତାର ଭାଇ । ବରଜୁ ପରି ମୋ କୃଷକ ବନ୍ଧୁଟି ମୋ ପାଖକୁ ଆସିଥିଲା । ତା ସମସ୍ୟା, ପାରିପାର୍ଶ୍ୱିକ ସମସ୍ୟା, ଭାଇପ୍ରତି ଭାଇର ଉଦାରତା ମାଟିର ମଣିଷ ଲେଖିବାପାଇଁ ଉତ୍ସାହିତ କରିଥିଲା । ସେହିଭଳି ମୋର ଗୋଟିଏ ପ୍ରିୟ କୁକୁର ଥିଲା । ଇତର ପ୍ରାଣୀ ଭିତରେ ମଧ୍ୟ ସ୍ନେହ, ମମତା ଭରିହୋଇ ରହିଛି । ସେହି ଅନୁଶୀଳନ 'ମାଂସର ବିଳାପ' ଗଳ୍ପରେ ପ୍ରତିଫଳନ ଘଟି ଥାଇପାରେ... ।'' ଏଥିରୁ ବୁଝାପଡ଼େ ନିଜ ଅନୁଭୂତି ପ୍ରତି ସତ୍ୟନିଷ୍ଠ ଭାବହିଁ ସଦାକାଳେ ସାହିତ୍ୟିକ ପ୍ରେରଣାର ସ୍ୱର୍ଗୀୟ ଉତ୍ସ । ଆଲୋଚ୍ୟ ଔପନ୍ୟାସିକଙ୍କ ଏହି ଦୃଢ଼ୋକ୍ତି ପ୍ରତିଟି ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞାକୁ ଖୋରାକ ଯୋଗେଇବ ନିଶ୍ଚୟ ।

ଏଭଳି ଜଣେ ମହାନୁଭବ ସ୍ରଷ୍ଟାଙ୍କ ଜୀବନ ଓ ପ୍ରତିଭା ସମ୍ବନ୍ଧରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ପ୍ରାଧ୍ୟାପକ ବିଶିଷ୍ଟ ସମାଲୋଚକ ଡକ୍ଟର ଆଦିକନ୍ଦ ସାହୁ ନିଜର ସୃଜନଶୀଳ ଆଭିମୁଖ୍ୟ ନେଇ ଏହି କ୍ଷୁଦ୍ର ପୁସ୍ତିକାଟି ରଚନା କରିଛନ୍ତି । ସେଥିପାଇଁ ସେ ଧନ୍ୟବାଦାର୍ହ । ଓଡ଼ିଶା ସାହିତ୍ୟ ଏକାଡେମୀ ଏହାର ପ୍ରକାଶନ ଭାର ହାତକୁ ନେଇ ନିଜ କର୍ତ୍ତବ୍ୟ ସମ୍ପାଦନ କରିଛି ମାତ୍ର ।

ମୁଁ ପୁସ୍ତକଟିର ବହୁଳ ପ୍ରଚାର ତଥା ପ୍ରସାର କାମନା କରିବା ସାଙ୍ଗକୁ ଏହା ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ଆଦୃତି ଲାଭ କରିବ, ଏହି ଆଶା ରଖୁଛି ।

**ଅଶ୍ୱିନୀ କୁମାର ମିଶ୍ର**

ସଂପାଦକ

# ବିଷୟ ସୂଚୀ

# ଉପୋଦ୍‌ଘାତ

କାଳିନ୍ଦୀଚରଣ ଥିଲେ ଏକାଧାରରେ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ପ୍ରାବନ୍ଧିକ ତଥା ସମାଲୋଚକ । ଓଡ଼ିଆ ସାହିତ୍ୟ ଜଗତରେ ସେ ଥିଲେ ଜଣେ ସୁପ୍ରତିଷ୍ଠିତ ସାରସ୍ୱତ ପୁରୁଷ । 'ମାଂସର ବିଳାପ' ଗଳ୍ପ, 'ମାଟିର ମଣିଷ' ଉପନ୍ୟାସ ପାଇଁ ତାଙ୍କୁ ଉଲ୍ଲେଖଯୋଗ୍ୟ ଲୋକପ୍ରିୟତା ମିଳିଥିଲା । ତରୁଣ ପ୍ରବୀଣ ନିର୍ବିଶେଷରେ ତାଙ୍କୁ ଉଲ୍ଲିଖିତ ସାହିତ୍ୟ କୃତି ପାଇଁ ସମସ୍ତେ ଜାଣନ୍ତି ।

କାଳିନ୍ଦୀଚରଣ 'ମାଟିର ମଣିଷ', 'ଲୁହାର ମଣିଷ', 'ଆଜିର ମଣିଷ', 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମରଚିତା' ପରି ସାମାଜିକ ଉପନ୍ୟାସ ରଚନା କରି ଓଡ଼ିଶାର ଅଗଣିତ ପାଠକ ପାଠିକାଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । 'ବାସନ୍ତି' ପରି ଏକ ଯୌଥ ଉପନ୍ୟାସର ଅନ୍ୟତମ ଲେଖକ ମଧ୍ୟ ସେ ଥିଲେ । ଉଲ୍ଲିଖିତ ଉପନ୍ୟାସମାନଙ୍କ ମଧ୍ୟରୁ 'ମାଟିର ମଣିଷ' ତାଙ୍କର ସବୁଠାରୁ ଲୋକପ୍ରିୟ ଓ କାଳଜୟୀ ଉପନ୍ୟାସ ।

କ୍ଷୁଦ୍ରଗଳ୍ପ ରଚନା କ୍ଷେତ୍ରରେ ମଧ୍ୟ ତାଙ୍କର କୃତିତ୍ୱ ଏକାନ୍ତ ଅବିସ୍ମରଣୀୟ । 'ମାଟିର ମଣିଷ' ପରି 'ମାଂସର ବିଳାପ' ତାଙ୍କର ସୁପ୍ରସିଦ୍ଧ କ୍ଷୁଦ୍ରଗଳ୍ପ । 'ମୋ କଥାଟି ସରିନାହିଁ', 'ସାଗରିକା' 'ଦ୍ୱାଦଶୀ', 'ରାଶିଫଳ' ଆଦି ଗଳ୍ପଗ୍ରନ୍ଥ ପ୍ରସିଦ୍ଧ । ଏହିସବୁ ଗଳ୍ପଗ୍ରନ୍ଥରେ ପ୍ରକାଶିତ ଗଳ୍ପଗୁଡ଼ିକ ଅଧିକାଂଶରେ ଓଡ଼ିଶାର ସମସାମୟିକ ଜୀବନକୁ ନେଇ ହିଁ ରଚିତ ।

ଉଭୟ ଗଳ୍ପ ଉପନ୍ୟାସରେ ସେ ଉଦାର ମାନବତାବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି ।

ତାଙ୍କର ଅଭିଜାତ କବିତା ଗ୍ରନ୍ଥମାନଙ୍କ ମଧ୍ୟରେ 'ଛୁରିଟିଏ ଲୋଡ଼ା', 'କ୍ଷଣିକସତ୍ୟ', 'ମନେନାହିଁ','ମହାଦୀପ', 'ଶେଷରଶ୍ମି', 'ସବୁଜ କବିତା' ଆଦି ପ୍ରଧାନ । କାଳିନ୍ଦୀଚରଣଙ୍କ କବିବ୍ୟକ୍ତିତ୍ୱ ଯେପରି ସେହିପରି ମଧ୍ୟ ତାଙ୍କର କଥାଶିଳ୍ପୀର ବ୍ୟକ୍ତିତ୍ୱ । ଓଡ଼ିଶାର ଅଗଣିତ ପାଠକଙ୍କୁ ତାଙ୍କ ଗଳ୍ପ, ଉପନ୍ୟାସ ଓ କବିତା ଅଭିଭୂତ କରିଦିଏ ।

'ପ୍ରିୟଦର୍ଶିନୀ' ଭଳି ତାଙ୍କର ନାଟକଗ୍ରନ୍ଥ ରହିଛି ଓ ସେ ମଧ୍ୟ କେତୋଟି ସଫଳ ଏକାଙ୍କିକାର ରଚୟିତା । ଏତଦ୍‌ଭିନ୍ନ ଓଡ଼ିଶାର ଶୁଦ୍ଧ ସମାଲୋଚନା ଧାରାରେ ସେ ଜଣେ ସଫଳ ସମାଲୋଚକ ଓ ଅନ୍ୟତମ ବିଶିଷ୍ଟ ପ୍ରାବନ୍ଧିକ ଭାବରେ ପରିଚିତ । ତାଙ୍କର ଅଧିକାଂଶ ପ୍ରବନ୍ଧ ଯେପରି ତଥ୍ୟନିଷ୍ଠ ସେହିପରି ଭାବନିଷ୍ଠ ମଧ୍ୟ । ତାଙ୍କର ଶୈଳୀରେ ବେଶ୍ ଏକ ସୃଜନଶୀଳ ଅନୁଭବ ସଂଚାଳିତ ହୋଇଛି । ତାଙ୍କ ପ୍ରକାଶିତ ପ୍ରବନ୍ଧମାନଙ୍କ ମଧ୍ୟରେ 'ସତ୍ୟ ଶିବ ସୁନ୍ଦର', 'ତ୍ୟାଗ ଓ ପ୍ରେମ', ବେଗହିଁ ଉନ୍ନତିର ଲକ୍ଷଣ', 'ବିଶ୍ୱରୂପ ଦର୍ଶନ', 'ଉତ୍ତରାଧିକାର', 'କୈଶୋରସ୍ଥାନ', 'ଆଧୁନିକା ନାରୀ' ଆଦି ପ୍ରଧାନ । ସେ ପୁଣି କେତେକ ଉତ୍କୃଷ୍ଟ ଜୀବନୀମୂଳକ ତଥା ବର୍ଣ୍ଣନାତ୍ମକ ପ୍ରବନ୍ଧ ରଚନା କରିଛନ୍ତି ।

'ଓଡ଼ିଆ ସାହିତ୍ୟର ପରମ୍ପରା', 'ଫକିରମୋହନଙ୍କ ଚରିତ୍ର ଚିତ୍ରଣ', 'ଲାବଣ୍ୟବତୀରେ ଉପେନ୍ଦ୍ର ଭଞ୍ଜ', 'ରବୀନ୍ଦ୍ର ସାହିତ୍ୟରେ ବିଶ୍ୱମୈତ୍ରୀ', 'ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଐତିହାସିକ -ଅଭ୍ୟୁତ୍‌ଥାନ', 'ହିନ୍ଦୀ କଥା ସାହିତ୍ୟ ସମ୍ରାଟ ପ୍ରେମଚନ୍ଦ', 'ବୋରିସ୍ ପାଷ୍ଟରନାକ', 'ମଥୁରା ମଙ୍ଗଳ ସମାଲୋଚନା' ଆଦି କେତେକ ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧରେ ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି, ଉନ୍ନତ ଅଭିରୁଚି ତଥା ସୂକ୍ଷ୍ମାତିସୂକ୍ଷ୍ମ ବିଚାର ବିଶ୍ଳେଷଣର ପରିଚୟ ମିଳେ । ସେ ବହୁ କ୍ଷୁଦ୍ର/ବୃହତ୍ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଡ଼ିତ ଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ତଥା ଆକାଶବାଣୀର ବିଭିନ୍ନ ପଦବୀରେ ଥାଇ ଓଡ଼ିଆ ସାହିତ୍ୟ ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ସଂକଳ୍ପବଦ୍ଧ ଭାବେ ଉଦ୍ୟମ କରିଛନ୍ତି ।

ସେ ଯେପରି ଜଣେ ପ୍ରତିଷ୍ଠିତ ରୋମାଣ୍ଟିକ କବିଥିଲେ, ସେହିପରି ଜଣେ ପ୍ରମୁଖ ମାନବତାବାଦୀ ତଥା ବାସ୍ତବବାଦୀ କଥାଶିଳ୍ପୀ ଥିଲେ । ତାଙ୍କ ଗଳ୍ପ - କବିତାରେ ମାନବତାବାଦ, ବୈପ୍ଳବିକ ଚେତନା ତଥା ସାମ୍ୟବାଦୀ ଅନୁଚିନ୍ତା କମ୍ ବେଶୀରେ ପରିଲକ୍ଷିତ ହୁଏ ।

କାଳିନ୍ଦୀଚରଣ ଥିଲେ ସବୁଜ ଗୋଷ୍ଠୀର ଜଣେ ପ୍ରମୁଖ ସଦସ୍ୟ । କାଳିନ୍ଦୀଚରଣଙ୍କ ବ୍ୟତୀତ ବୈକୁଣ୍ଠ ନାଥ, ଅନ୍ନଦାଶଙ୍କର, ଶରତଚନ୍ଦ୍ର ତଥା ହରିହର ମହାପାତ୍ର ସବୁଜ ଗୋଷ୍ଠୀର ଅନ୍ୟ ସଦସ୍ୟ ଥିଲେ । କଟକର ଅଭିଜାତ ସରକାରୀ ମହାବିଦ୍ୟାଳୟ ରେଭେନ୍ସାରେ ସେ ବି.ଏ. ପଢୁଥିଲାବେଳେ ପୂର୍ବ ଛାତ୍ରାବାସର ଅନ୍ତେବାସୀ ଥିଲେ ଓ ସେହି ସମୟରେ ସେ ଏହି ସ୍ମରଣୀୟ ସବୁଜ ଗୋଷ୍ଠୀ ଗଠନ କରିଥିଲେ । ସବୁଜଗୋଷ୍ଠୀ ଆନୁକୂଲ୍ୟରେ ସେମାନେ 'ଯୁଗବୀଣା' ତଥା 'ଅବକାଶ' ସାହିତ୍ୟ ପତ୍ରିକା ପ୍ରକାଶ କରୁଥିଲେ । ସେଦିନ ଏହି ସବୁଜ ଗୋଷ୍ଠୀର ସାହିତ୍ୟିକ ଇସ୍ତାହାର ପ୍ରତି ଅନେକଙ୍କର ସଶ୍ରଦ୍ଧ ଆକର୍ଷଣ ଥିଲା ।

ସେ ତାଙ୍କର ସାରସ୍ୱତ ସାଧନା ପାଇଁ 'ଓଡ଼ିଶା ସାହିତ୍ୟ ଏକାଡେମୀ', 'କେନ୍ଦ୍ର ସାହିତ୍ୟ ଏକାଡେମୀ' ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ ୧୯୭୧ ମସିହାରେ ପଦ୍ମଭୂଷଣ ଉପାଧିରେ ମଧ୍ୟ ଭୂଷିତ ହୋଇଥିଲେ ।

ଓଡ଼ିଶାର ନିଛକ ପଲ୍ଲୀଜୀବନକୁ ଚିତ୍ରଣ କରିବାରେ ତାଙ୍କ ଗଦ୍ୟ ଓ ପଦ୍ୟ ରଚନା-ଗୁଡ଼ିକ ଅନେକଙ୍କୁ ବିଭୋର କରିପକାଏ । ଓଡ଼ିଶାର ପଲ୍ଲୀଜୀବନ ଓ ତା'ର ନିଷ୍କପଟ ଜୀବନନାଟିକାକୁ ପର୍ଯ୍ୟବେକ୍ଷଣ କରିବାରେ ସେ ଯେପରି ଥିଲେ ବାସ୍ତବବାଦୀ, ସେହିପରି ମଧ୍ୟ ଅତୀତ ପ୍ରତି ସମ୍ମୋହିତ ଜଣେ ଭାବପ୍ରବଣ ସୃଜନଶିଳ୍ପୀ । ଚଳିତ ଶତାବ୍ଦୀର ବହୁ ଦଶନ୍ଧି ଧରି ଓଡ଼ିଶାର ସାହିତ୍ୟ ରାଜ୍ୟରେ ତାଙ୍କର ପ୍ରଭାବ ପ୍ରତିଷ୍ଠା ଅନେକଙ୍କୁ ବିମୋହିତ କରିଛି । ପ୍ରାଥମିକ ଶ୍ରେଣୀରୁ ବିଶ୍ୱବିଦ୍ୟାଳୟର ଉଚ୍ଚତମ ଶ୍ରେଣୀ ପର୍ଯ୍ୟନ୍ତ ତାଙ୍କ ଗଳ୍ପ କବିତା ପାଠ୍ୟ ହୋଇ ଆସୁଛି । ତାହା ପୁଣି ସମସ୍ତଙ୍କୁ ଉଭୟ ଶିକ୍ଷା ଓ ଆନନ୍ଦ ଦାନ କରିବାରେ ଉଲ୍ଲେଖଯୋଗ୍ୟ ସଫଳତା ଲାଭ କରିଛି । ବହୁ ଗ୍ରନ୍ଥର ପ୍ରଣେତା ଜଣେ ବିଶିଷ୍ଟ ସାରସ୍ୱତ ପୁରୁଷଭାବେ ସେ କେବଳ ଓଡ଼ିଶାରେ ନୁହନ୍ତି ସମଗ୍ର ଭାରତର ଜାତୀୟ ସାହିତ୍ୟ କ୍ଷେତ୍ରରେ ଜଣେ ଅତି ପରିଚିତ ଲେଖକ ଭାବେ ପ୍ରତିଷ୍ଠିତ ।

କାଳିନ୍ଦୀଚରଣ ପ୍ରାଥମିକଭାବେ କବିତା ରଚନାରେ ହିଁ ମନୋନିବେଶ କରିଥିଲେ । ସେ ଓଡ଼ିଆ ସାହିତ୍ୟରେ ଅନ୍ୟତମ ବିଶିଷ୍ଟ ସବୁଜ କବି । ସେ ପରେ ଉପନ୍ୟାସ ରଚନାରେ ବ୍ରତୀ ହେଲେ । ମାଟିର ମଣିଷ (୧୯୩୧) ଉପନ୍ୟାସ ରଚନା ପାଇଁ ତାଙ୍କୁ ଯଥେଷ୍ଟ ସମ୍ମାନ ମିଳିଲା । ଉପନ୍ୟାସ ରଚନାପରେ ସେ ଗଳ୍ପ ଲେଖିଛନ୍ତି ।

ସେ ତିରିଶରୁ ଅଧିକ ଗଳ୍ପ ରଚନା କରିଛନ୍ତି । ମାଂସର ବିଳାପ ଗଳ୍ପ ପାଇଁ ସେ ଉଲ୍ଲେଖଯୋଗ୍ୟ ଲୋକପ୍ରିୟତା ଅର୍ଜନ କରିଛନ୍ତି । ସେ ଭ୍ରମଣ କାହାଣୀ, ପ୍ରବନ୍ଧ, ସାହିତ୍ୟ, ସମାଲୋଚନା ତଥା ଆତ୍ମଜୀବନୀ ମଧ୍ୟ ରଚନା କରିଛନ୍ତି । କାଳିନ୍ଦୀଚରଣ କବି ଭାବରେ ଯେପରି ସଫଳତା ଅର୍ଜନ କରିଥିଲେ ପରବର୍ତ୍ତୀ କାଳରେ ଗଦ୍ୟ ଲେଖକ ଭାବେ ମଧ୍ୟ ଅନୁରୂପ ସଫଳତା ଲାଭ କରିଛନ୍ତି ।

ଜଣେ ଓଡ଼ିଆ କବି ଓ କଥାଶିଳ୍ପୀ ଭାବେ କାଳିନ୍ଦୀଚରଣ ଓଡ଼ିଶା ବାହାରେ ମଧ୍ୟ ପରିଚିତ ଥିଲେ । ଓଡ଼ିଶାର ବହୁ ସମାଲୋଚକ କାଳିନ୍ଦୀଚରଣଙ୍କ କବି ପ୍ରତିଭା ତଥା ତାଙ୍କ ଗଳ୍ପ ଉପନ୍ୟାସ ସମ୍ପର୍କରେ ତାତ୍ତ୍ୱିକ ତଥା ଭାବବାଦୀ ଆଲୋଚନା କରିଛନ୍ତି । 'A House Undivided' ଶୀର୍ଷକରେ ଶ୍ରୀମତୀ ଇଳା ରାୟ 'The Mirror' ପତ୍ରିକାରେ କାଳିନ୍ଦୀଚରଣଙ୍କ ମାଟିର ମଣିଷ ଉପନ୍ୟାସର ଇଂରାଜୀ ଅନୁବାଦ ପ୍ରକାଶ କରିଥିଲେ । ପରବର୍ତ୍ତୀ ସମୟରେ ବିଶିଷ୍ଟ ଆଲୋଚକ ସୁବ୍ରମଣ୍ୟମ ଉକ୍ତ ଉପନ୍ୟାସ ସଂପର୍କରେ ଯେଉଁ ବିଶ୍ଳେଷଣାତ୍ମକ ଆଲୋଚନା କରିଥିଲେ ତାହା 'Ten great novels of India' ଶିରୋନାମାରେ ସେହି 'ଦି ମିରର' ପତ୍ରିକାରେ ସ୍ଥାନିତ ହୋଇଥିଲା ।

କାଳିନ୍ଦୀଚରଣ ଓଡ଼ିଶାର ତଦାନୀନ୍ତନ ସାହିତ୍ୟ ଓ ସାଂସ୍କୃତିକ ଧାରାରେ ଜଣେ ବେଶ୍ ପ୍ରତିଷ୍ଠିତ ପୁରୁଷ ଥିଲେ । ଓଡ଼ିଶାର କ୍ଷୁଦ୍ର ବୃହତ୍ ବହୁ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ଯୋଗସୂତ୍ର ଥିଲା ।

ସବୁଜଗୋଷ୍ଠୀଙ୍କ ବହୁମୁଖୀ କାର୍ଯ୍ୟକ୍ରମରେ ଅନ୍ୟତମ ସଦସ୍ୟ ଭାବେ ସେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି । ସବୁଜ ସାହିତ୍ୟ ସୃଷ୍ଟିକୁ ସେ ଏକ ପ୍ରଭାବଶାଳୀ ଆଧୁନିକ କାବ୍ୟ ଆନ୍ଦୋଳନରେ ପରିଣତ କରିପାରିଥିଲେ । କାଳିନ୍ଦୀଚରଣ ତାଙ୍କ ଜୀବନ ଆରମ୍ଭରେ ଜଣେ ସାମ୍ବାଦିକ ହେବା ପାଇଁ ସ୍ୱପ୍ନ ଦେଖିଥିଲେ । ସେ ଓଡ଼ିଶାର ବିଭିନ୍ନ ପ୍ରଶାସନିକ କାର୍ଯ୍ୟରେ ମଧ୍ୟ ନିଯୁକ୍ତ ହୋଇଛନ୍ତି ।

ତାଙ୍କର ନିଷ୍ଠା ଓ ଆନ୍ତରିକତା ଯୋଗୁଁ ସେ ସବୁକ୍ଷେତ୍ରରେ ସଫଳ ହୋଇଛନ୍ତି । ଶିଶୁ ସାହିତ୍ୟିକ ହେବାଠାରୁ ଆରମ୍ଭ କରି ଉଚ୍ଚ ଉଦାତ୍ତ ଅନୁଭବରେ କବିତା ଲେଖିବା ପର୍ଯ୍ୟନ୍ତ । ସେ ହେଉଛନ୍ତି ଓଡ଼ିଶାର ଅନ୍ୟତମ ବିଶିଷ୍ଟ ସାରସ୍ୱତ ପୁରୁଷ ଯେ ଶିଶୁ ଶ୍ରେଣୀର ପିଲାଙ୍କ ପାଇଁ ବେଶ୍ ସରସ ଓ ସୁପାଠ୍ୟ କବିତା ଲେଖିପାରିଛନ୍ତି ତଥା ପ୍ରବୀଣ ଭାବବିଭୋର ପରମାର୍ଥୀମାନଙ୍କ ପାଇଁ ମଧ୍ୟ ବହୁ ଭାବୋଦ୍ଦୀପକ କବିତା ଲେଖିଛନ୍ତି । ଏହା କମ୍ ବଡ଼ ପାରଦର୍ଶିତାର ବିଷୟ ନୁହେଁ । କାଳିନ୍ଦୀଚରଣଙ୍କ ଅଧିକାଂଶ କବିତା ପୁଣି ସ୍କୁଲ କଲେଜରେ ପାଠ୍ୟ । ବିଶ୍ୱବିଦ୍ୟାଳୟର

ଉଚ୍ଚତମ ଶ୍ରେଣୀରେ ତାଙ୍କ କବିତା ପାଠ୍ୟ ହୋଇଛି ଓ ଅନେକଙ୍କ ଦ୍ୱାରା ତାଙ୍କ କବିତାର ଉଚ୍ଚତର ଗବେଷଣା ମଧ୍ୟ କରାଯାଉଛି ।

କାଳିନ୍ଦୀଚରଣ, ଅନ୍ନଦାଶଙ୍କର, ବୈକୁଣ୍ଠନାଥ ପଟ୍ଟନାୟକ, ହରିହର ମହାପାତ୍ର, ଶରତଚନ୍ଦ୍ର କଟକ ରେଭେନ୍‌ସା କଲେଜରେ ଛାତ୍ର ଥିଲାବେଳେ ଏକ ସାରସ୍ୱତ ତଥା ବୌଦ୍ଧିକ ଜୀବନ ପ୍ରତି ଉନ୍ମୁଖ ହୋଇପଡ଼ିଥିଲେ । ବଙ୍ଗଳା ତଥା ଇଂରାଜୀ ସାହିତ୍ୟ ପଢ଼ାପଢ଼ିକରି ତଦନୁଯାୟୀ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ସେମାନେ ସେଦିନ ନିଷ୍ଠାପର ଭାବେ ଚିନ୍ତା କରିଥିଲେ ଓ ସଂକଳ୍ପ କରିଥିଲେ ମଧ୍ୟ । ପୂର୍ବଛାତ୍ରାବାସରୁ 'ଜାଗରଣ' ବୋଲି ଏକ ପତ୍ରିକା କାଳିନ୍ଦୀଚରଣଙ୍କ ସମ୍ପାଦନାରେ ସେଦିନ ପ୍ରକାଶିତ ହୋଇଥିଲା । ଗାନ୍ଧିଜୀଙ୍କ ସ୍ୱାଧୀନତା ଆନ୍ଦୋଳନର ପ୍ରେରଣା ସମସ୍ତଙ୍କୁ ପ୍ରୋତ୍ସାହିତ କରିଥିଲା । ସମଗ୍ର ଭାରତର ମୁକ୍ତିକାମୀ ଭାରତବାସୀଙ୍କ ଜାଗରଣକୁ ଆଖି ଆଗରେ ରଖି ବୋଧହୁଏ କାଳିନ୍ଦୀ ଓ ତାଙ୍କ ସହପାଠୀମାନେ ପୂର୍ବଛାତ୍ରାବାସରୁ ପ୍ରକାଶିତ ମୁଖପତ୍ରର ନାମକରଣ 'ଜାଗରଣ' ବୋଲି କରିଥିଲେ ।

'ଉତ୍କଳ ସାହିତ୍ୟ'ର ପ୍ରବୀଣ ସଂପାଦକ ବାଗ୍ମୀ ବିଶ୍ୱନାଥ କର ତଥା ମୁକୁର ପତ୍ରିକାର ସୁଧୀ ସଂପାଦକ ବ୍ରଜସୁନ୍ଦର ଦାସଙ୍କ ସ୍ନେହ ଓ ସାନ୍ନିଧ୍ୟ କାଳିନ୍ଦୀ ଓ ସମକାଳୀନ ସବୁଜ ଗୋଷ୍ଠୀର ସହପାଠୀମାନଙ୍କୁ ବିଶେଷ ପ୍ରବୋଧିତ କରିଥିଲା । ଏତଦ୍‌ଭିନ୍ନ ରେଭେନ୍‌ସା କଲେଜର ସୁନାମଧନ୍ୟ ଅଧ୍ୟାପକ ଗିରିଜା ଶଙ୍କର ରାୟ, ବିପିନ ବିହାରୀ ରାୟ, ଆର୍ତ୍ତବଲ୍ଲଭ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ ପ୍ରମୁଖ ବିଦ୍ୱାନମାନଙ୍କ ଶ୍ରଦ୍ଧା ଓ ଉତ୍ସାହ କାଳିନ୍ଦୀଚରଣଙ୍କୁ ଲେଖାଲେଖି କରିବା ପାଇଁ ପ୍ରେରଣା ଦେଇଥିଲା ।

ଅନ୍ନଦାଶଙ୍କର ତଥା ଶରତଚନ୍ଦ୍ର ଆଇ.ଏ. ପାସ୍ କରି ଉଚ୍ଚତର ଅଧ୍ୟୟନ ପାଇଁ ପାଟଣା ଚାଲିଯିବାପରେ କଟକରେ ସବୁମତେ ଏମାନଙ୍କର କେନ୍ଦ୍ର ହୋଇ ରହିଲେ କାଳିନ୍ଦୀଚରଣ । ୧୯୨୩ ରୁ ୨୫ ମସିହା ଭିତରେ କାଳିନ୍ଦୀଚରଣଙ୍କ ବିଶେଷ ତତ୍ପରତା ଯୋଗୁଁ ସବୁଜ ଗୋଷ୍ଠୀର ସଦସ୍ୟମାନଙ୍କ ସହିତ ଅନ୍ୟମାନଙ୍କୁ ମିଶାଇ ଏକ ଯୌଥ ଉପନ୍ୟାସ ରଚନାର ପରିକଳ୍ପନା ହୋଇଥିଲା । 'ଉତ୍କଳ ସାହିତ୍ୟ'ର ବରେଣ୍ୟ ସଂପାଦକ ବିଶ୍ୱନାଥ କର ଶ୍ରଦ୍ଧାବଶତଃ କାଳିନ୍ଦୀଚରଣଙ୍କ ଏ ପ୍ରକାର ଅଭିନବ ଉଦ୍ୟମର ପ୍ରଶଂସା କରି ଉକ୍ତ ଯୌଥ ଉପନ୍ୟାସର ସଯତ୍ନ ପ୍ରସ୍ତୁତ ପାଣ୍ଡୁଲିପିକୁ ଉତ୍କଳ ସାହିତ୍ୟରେ ଖଣ୍ଡ ଖଣ୍ଡ କରି ଛାପିଥିଲେ ।

କାଳିନ୍ଦୀଚରଣ ସମବାୟ ସମିତିରେ ସରକାରୀ ଚାକିରି କଲେ ସତ; କିନ୍ତୁ ତାଙ୍କ ମନରେ ସେତେବେଳକୁ ସର୍ବହରାମାନଙ୍କ ପ୍ରତି ସଶ୍ରଦ୍ଧ ମାର୍କସ୍‌ବାଦୀ ଚିନ୍ତାଧାରା ଭରିଯାଇଥିଲା । ହୁଏତ ଯାହାର ପ୍ରତିବଦ୍ଧ ଅଭିବ୍ୟକ୍ତି କାଳିନ୍ଦୀଚରଣଙ୍କ ଅନେକ କବିତାରେ ପରିଲକ୍ଷିତ ହୁଏ ।

କାଳିନ୍ଦୀଚରଣ ଅତି ଶୈଶବରୁ ହିଁ ଅତ୍ୟନ୍ତ ସ୍ୱପ୍ନପ୍ରବଣ ଥିଲେ । ସ୍ୱପ୍ନ ନ ଥିଲେ କାହାର ଜୀବନ ସୃଜନଶୀଳ ହୁଏନା । ତାଙ୍କ ପିତା ଶ୍ରୀ ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କ ସ୍ମୃତିରେ ସେ ତାଙ୍କ ବାସଗୃହର ନାମ ରଖିଥିଲେ 'ସ୍ୱପ୍ନପୁରୀ' । ମହାନ୍ ସାରସ୍ୱତ ପୁରୁଷ ପଦ୍ମଭୂଷଣ ଡକ୍ଟର କାଳିନ୍ଦୀଚରଣ ପାଣିଗ୍ରାହୀ ସେହି ସ୍ୱପ୍ନପୁରୀରେ ବାଣୀସାଧନା କରିବା ପାଇଁ ସମଗ୍ର ଜୀବନ

ସ୍ୱପ୍ନପ୍ରବଣ ହୋଇଛନ୍ତି । 'ସ୍ୱପ୍ନପୁରୀ' ଥିଲା ଯେପରି କାଳିନ୍ଦୀଚରଣଙ୍କ ସୁଦୀର୍ଘ ସାରସ୍ୱତ ଜୀବନପାଇଁ ଏକ ସାଧନକକ୍ଷ ।

୧୯୨୧ ରେ କାଳିନ୍ଦୀଚରଣଙ୍କ ସମେତ ବୈକୁଣ୍ଠନାଥ ପଟ୍ଟନାୟକ, ଅନ୍ନଦାଶଙ୍କର ରାୟ, ଶରତ ଚନ୍ଦ୍ର ମୁଖାର୍ଜୀ, ହରିହର ମହାପାତ୍ର 'ନନ୍‌ସେନ୍‌ସ କ୍ଲବ' ଗଠନ କଲେ । ଏହି ଅଭିନବ ଅନୁଷ୍ଠାନ କେବଳ ବନ୍ଧୁମିଳନର ଆସର ନଥିଲା; ଥିଲା ମଧ୍ୟ ଜ୍ଞାନ ବିଜ୍ଞାନ ଚର୍ଚ୍ଚାର ଏକ ଅନୁଷ୍ଠାନ । ଗୋଟିଏ ଉଦ୍ଦାମ ସାହିତ୍ୟ ଆନ୍ଦୋଳନର କେନ୍ଦ୍ର ଥିଲା ଏହି ନନ୍‌ସେନ୍‌ସ କ୍ଲବ । ଏହି ଅନୁଷ୍ଠାନର ମୁଖପତ୍ର ଥିଲା 'ଅବକାଶ' । ଅନ୍ନଦାଶଙ୍କର, ବୈକୁଣ୍ଠନାଥ, କାଳିନ୍ଦୀଚରଣ, ଶରତ ଚନ୍ଦ୍ରଙ୍କ ନାମର ଆଦ୍ୟ ଅକ୍ଷର ସବୁକୁ ନେଇ ଏହି 'ଅବକାଶ' ପତ୍ରିକାର ନାମକରଣ କରାଯାଇଥିଲା । ନନ୍‌ସେନ୍‌ସ କ୍ଲବ ଗଠନ ଓ ସେ କ୍ଲବ ଆନୁକୂଲ୍ୟରେ 'ଅବକାଶ' ପତ୍ରିକା ପ୍ରକାଶନ ସେଦିନ ଓଡ଼ିଆ ସାହିତ୍ୟରେ ଅତ୍ୟନ୍ତ କୌତୁକପ୍ରଦ ଘଟଣା ଥିଲା ।

କାଳିନ୍ଦୀଚରଣ ତାଙ୍କର ସତୀର୍ଥ ଅନ୍ୟ ସବୁଜ ବନ୍ଧୁମାନଙ୍କୁ ପାଇ ସାହିତ୍ୟ ଚର୍ଚ୍ଚାରେ ମୁଖର ହୋଇ ଉଠିଲେ । ତାଙ୍କ ଛାତ୍ର ଜୀବନରେ ସେ ବିଶ୍ୱ ସାହିତ୍ୟ ଅଧ୍ୟୟନ ପ୍ରତି ଆଗ୍ରହୀ ଥିଲେ । ଟଲଷ୍ଟୟ, ବାର୍ଣ୍ଣାଡ୍‌ସ, ରସେଲ ଆଦି ଲେଖକମାନେ ତାଙ୍କର ଅତିପ୍ରିୟ ଥିଲେ । ଏହାଦ୍ୱାରା ତାଙ୍କର ବିଶ୍ୱଦୃଷ୍ଟି ପ୍ରସାରିତ ହେବାକୁ ଲାଗିଲା ।

କାଳିନ୍ଦୀଚରଣ ପ୍ରମୁଖ ସବୁଜମନା କବିମାନେ ସବୁଜଦଳ ଗଠନ କରିଥିବାରୁ ସେତେବେଳେ ପ୍ରାଚୀନପନ୍ଥୀ କେତେଜଣ ସେମାନଙ୍କୁ ଥଟ୍ଟା ଓ ପରିହାସ କରିଥିଲେ । ସେତେବେଳେ ସେ ତାଙ୍କର 'ସୌମ୍ୟ' ନାଟକ ଲେଖି ତାହା ତାଙ୍କର ସତୀର୍ଥ ଓ ସହପାଠୀ ଅନ୍ନଦାଶଙ୍କର ରାୟଙ୍କୁ ଉତ୍ସର୍ଗ କରିଥିଲେ । ଅନ୍ନଦାଶଙ୍କର ସେହିପରି ବନ୍ଧୁ କାଳିନ୍ଦୀଚରଣଙ୍କୁ ବଙ୍ଗଳାରେ ରଚିତ ତାଙ୍କର କବିତା ଗ୍ରନ୍ଥ 'କାମନା ପଞ୍ଚବିଂଶତି' ଉତ୍ସର୍ଗ କରିଥିଲେ । ଏହା ଥିଲା ସବୁଜ ବନ୍ଧୁମାନଙ୍କ ମଧ୍ୟରେ ଭାବପ୍ରୀତି ଆଦାନ ପ୍ରଦାନର ବିଷୟ ।

୧୯୨୧ରୁ ଆରମ୍ଭ ହୋଇ ୧୯୩୩ରେ ପ୍ରାୟ ଏହି ସବୁଜ ଯୁଗ ପରିସମାପ୍ତି ଲାଭ କରିଥିଲା । ନବ ସୃଜନଧର୍ମ, ଯୌବନଧର୍ମ ଓ ପ୍ରଗତିଶୀଳ ଯୁଗଧର୍ମ ମିଶି ବସ୍ତୁତଃ ସବୁଜ ସାହିତ୍ୟର ଧର୍ମ ବା ଆଦର୍ଶ ଗଠିତ ହୋଇଥିଲା । ସବୁଜ ସାହିତ୍ୟର ଲକ୍ଷ୍ୟ ଥିଲା ପ୍ରାଚ୍ୟ ପାଶ୍ଚାତ୍ୟର ଭାବ ଓ ଚିନ୍ତାତ୍ମକ ସମନ୍ୱୟ ଏବଂ ବିଶ୍ୱମୁଖୀନତା । ଇଂରାଜୀ ସାହିତ୍ୟ ପ୍ରତି ଅନ୍ୟ ସବୁଜ ବନ୍ଧୁମାନଙ୍କ ସହିତ କାଳିନ୍ଦୀଚରଣଙ୍କର ଯଥେଷ୍ଟ ଆଗ୍ରହ ଥିଲା । ତାହା ତାଙ୍କ ସାହିତ୍ୟ ରୁଚିକୁ ମଧ୍ୟ ନାନା ଭାବରେ ପୁଷ୍ଟ କରିଛି । ତାଙ୍କର ନିବିଡ଼ ସାହିତ୍ୟିକ ଜୀବନ ସହିତ ତାଙ୍କର କିଛି ସାଂଗଠନିକ ବ୍ୟସ୍ତତା ମଧ୍ୟ ଥିଲା । କାଳିନ୍ଦୀଚରଣ 'ଭଞ୍ଜପ୍ରଦୀପ' ଓ 'ମୟୂରଭଞ୍ଜ କ୍ରନିକିଲ'ର ସଂପାଦନା କରୁଥିଲେ ଓ ବାରିପଦାରେ ଏକ ନିୟମିତ ସାହିତ୍ୟ ଆସରର ପରିଚାଳନା କରୁଥିଲେ ।

ଷ୍ଟେଟ୍‌ସ୍‌ମେନ ଓ ଏସୋସିଏଟେଡ଼ ପ୍ରେସର ପ୍ରତିନିଧିଭାବେ ମଧ୍ୟ ସେ କାର୍ଯ୍ୟ କରୁଥିଲେ । ୧୯୩୮ରେ କାଳିନ୍ଦୀଚରଣ ଓଡ଼ିଶା ସରକାରୀ ଛାପାଖାନାରେ ହେଡ଼ ରିଡ଼ର

ଭାବେ ମଧ୍ୟ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହ କରିଥିଲେ । ୧୯୫୬ ମସିହାରେ ସେ କଟକ ଆକାଶବାଣୀରେ ସାହିତ୍ୟ ବିଭାଗର ପ୍ରଡ୍ୟୁସର ଭାବେ ଯୋଗଦାନ କରିଥିଲେ । ସେତେବେଳକୁ ସେ ଭାରତୀୟ ପି.ଇ.ଏନ୍‌ର ଜଣେ ପ୍ରମୁଖ ସଦସ୍ୟ ଥିଲେ ।

ସେ ଥିଲେ ଓଡ଼ିଶାରେ ବହୁ ପରିଚିତ ଜଣେ ପାଠ୍ୟପୁସ୍ତକ ଲେଖକ ଓ ସଫଳ ଶିଶୁ ସାହିତ୍ୟିକ । ୧୯୭୬ ମସିହାରେ ସାରସ୍ୱତ କ୍ଷେତ୍ରରେ ତାଙ୍କର ସାମଗ୍ରିକ କୃତିତ୍ୱ ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡି.ଲିଟ୍. ଡିଗ୍ରୀ ପ୍ରଦାନ କରିଥିଲା ।

କାଳିନ୍ଦୀଚରଣ ଆଗବୋଲା ଓ ଅରୂପ ଛଦ୍ମନାମରେ ଅନେକ ଲେଖା ପ୍ରକାଶ କରିଛନ୍ତି । ବିଶିଷ୍ଟ କଥାଶିଳ୍ପୀ ମୁନ୍‌ସୀ ପ୍ରେମଚନ୍ଦଙ୍କ ସମ୍ପାଦିତ 'ହଂସ' ପତ୍ରିକାରେ ମଧ୍ୟ ସେ ଉପଦେଷ୍ଟା ଥିଲେ । ଉତ୍କଳ ସାହିତ୍ୟ ସମାଜର ବହୁବର୍ଷ ଧରି ସଭାପତି ଥିଲେ ।

କାଳିନ୍ଦୀଚରଣ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସାହିତ୍ୟ ଅଧ୍ୟୟନ ପ୍ରତି ଅଧିକ ଆଗ୍ରହୀ ଥିଲେ । ବିଶ୍ୱକବିଙ୍କ ସମସ୍ତ ରଚନା ସେ ଅତି ତରୁଣ ବୟସରୁ ହିଁ ପାଠ କରିଥିଲେ ।

ସବୁଜମାନେ ରବୀନ୍ଦ୍ରଙ୍କ ପ୍ରଭାବଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିଲେ ହେଁ ସେମାନେ ଆନ୍ତର୍ଜାତୀୟ ଭାବଚେତନା ପ୍ରତି ଅଧିକ ସଶ୍ରଦ୍ଧ ଥିଲେ । କାଳିନ୍ଦୀଚରଣଙ୍କ ସାହିତ୍ୟ ତାଙ୍କ ଆନ୍ତର୍ଜାତୀୟ ଚେତନା ଓ ବିଶ୍ୱଦୃଷ୍ଟିର ପ୍ରତିବଦ୍ଧ ଅଭିବ୍ୟକ୍ତି ଥିଲା । ସେ ତାଙ୍କ ଦୀର୍ଘ ସାହିତ୍ୟିକ ଜୀବନକୁ ଏକ ଆନ୍ଦୋଳନରେ ପରିଣତ କରିପାରିଥିଲେ । ତେଣୁ ତାଙ୍କର କାବ୍ୟକୃତି ଶୁଦ୍ଧ ଏକ ଏକ କଳାକୃତି ମାତ୍ର ନୁହେଁ; ତାହା ବରଂ ସମାଜ ଓ ସମୟର ନାନାବିଧ ସମସ୍ୟା ଓ ଆହ୍ୱାନର ସାରସ୍ୱତ ଇସ୍ତାହାର ।

ଏହି ବିଶିଷ୍ଟ ସାରସ୍ୱତ ପୁରୁଷଙ୍କର ପିତାଙ୍କ ନାମ ସ୍ୱପ୍ନେଶ୍ୱର ପାଣିଗ୍ରାହୀ ଓ ମାତାଙ୍କ ନାମ ସରସ୍ୱତୀ ଦେବୀ ଏବଂ ଜନ୍ମ ୧୯୦୧ ଖ୍ରୀଷ୍ଟାବ୍ଦ ଶ୍ରାବଣ ଶୁକ୍ଳ ପ୍ରତିପଦରେ ପୁରୀ ଜିଲ୍ଲାର ବିଶ୍ୱନାଥପୁର ଗ୍ରାମରେ ।

ଭକ୍ତକବି ମଧୁସୂଦନ ଓ ଗୋପବନ୍ଧୁ ସ୍ୱପ୍ନେଶ୍ୱରଙ୍କ ବନ୍ଧୁ ଥିବାରୁ କାଳିନ୍ଦୀଚରଣ ଶୈଶବରୁ ସେମାନଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । ବଡ଼ଭାଇ ଦିବ୍ୟସିଂହ ପାଣିଗ୍ରାହୀ ଓ ସାନଭାଇ ଭଗବତୀ ଚରଣ ପାଣିଗ୍ରାହୀ ତାଙ୍କ ପରିବାରର ଆଉ ଦୁଇଜଣ ବିଶିଷ୍ଟ ଲେଖକ ଥିଲେ ।

# କାଳିନ୍ଦୀଚରଣ ଓ ସବୁଜଯୁଗ

୧୯୨୧ ମସିହା ହିଁ ସବୁଜ ଯୁଗ ଆରମ୍ଭର ବର୍ଷ । ଏହି ୧୯୨୧ ମସିହାରେ ସବୁଜ ଗୋଷ୍ଠୀର କବି ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ ତଥା ଶରତ ଚନ୍ଦ୍ର ମୁଖାର୍ଜୀ ରେଭେନ୍‌ସା କଲେଜର ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ର ହେଲେ । ଏହା ଥିଲା ସେମାନଙ୍କ ସାରସ୍ୱତ ବନ୍ଧୁତା ପାଇଁ ଏକ ସୁଯୋଗ । ସେମାନେ ସମସ୍ତେ ପ୍ରାୟ ରେଭେନ୍‌ସା କଲେଜର ପୂର୍ବ ଛାତ୍ରାବାସର ଅନ୍ତେବାସୀ ଥିଲେ । ସେହି ଚାରିଜଣ ଉଦ୍ଧାମ ଯୁବକ ବିଶ୍ୱର ଜ୍ଞାନ ବିଜ୍ଞାନ ଚର୍ଚ୍ଚା କରିବା ପାଇଁ ନନ୍‌ସେନ୍‌ସ କ୍ଲବ ଗଠନ କଲେ । ସେହି ନନ୍‌ସେନ୍‌ସ କ୍ଲବର ମୁଖପତ୍ର ରୂପେ ସେମାନେ ଅବକାଶ ନାମକ ଏକ ହାତଲେଖା ପତ୍ରିକା ପ୍ରକାଶ କଲେ । ୧୯୩୨ରେ ପୁଣି ସବୁଜ ସାହିତ୍ୟ ସମିତିର ମୁଖପତ୍ର ରୂପେ 'ଯୁଗବୀଣା' ପତ୍ରିକା ପ୍ରକାଶିତ ହେଲା । ଅନ୍ୟତମ ସବୁଜକବି ହରିହର ମହାପାତ୍ରଙ୍କ ଉପରେ ଏହି ପତ୍ରିକାର ସମ୍ପାଦନା ଦାୟିତ୍ୱ ନ୍ୟସ୍ତ ହେଲା । ୧୯୭୧ରେ ସବୁଜ ବନ୍ଧୁମାନେ ସେମାନଙ୍କ ସ୍ୱରଚିତ କବିତାକୁ ସବୁଜ କବିତା ନାମରେ ପ୍ରକାଶ କରି ଓଡ଼ିଶାର ଅଗଣିତ ପାଠକ ପାଠିକାଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କଲେ ।

ଓଡ଼ିଆ ସାହିତ୍ୟରେ ସବୁଜ ଯୁଗ ଅଳ୍ପ ବର୍ଷ ମାତ୍ର ସ୍ଥାୟୀ ହୋଇ ରହିଥିଲା । ମାତ୍ର ତାହା ସମସ୍ତଙ୍କ ପ୍ରାଣରେ ଅପୂର୍ବ ଭାବ-ତରଙ୍ଗ ଖେଳାଇ ଦେଇଥିଲା । ଏହି ସବୁଜଯୁଗର ପୂର୍ବବର୍ତ୍ତୀ ଯୁଗଥିଲା ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଯୁଗ । ସତ୍ୟବାଦୀ ସାହିତ୍ୟଯୁଗର ଆଦର୍ଶ ଥିଲା ସାହିତ୍ୟ ଜରିଆରେ ଜାତୀୟତାବାଦୀ ଭାବଧାରା ପ୍ରକାଶ କରିବା । ହୁଏତ ଯେଉଁ ପରମ୍ପରା ଓଡ଼ିଆ ସାହିତ୍ୟରେ କବିବର ରାଧାନାଥଙ୍କଠାରୁ ଆରମ୍ଭ ହୋଇଥିଲା । କିନ୍ତୁ ସତ୍ୟବାଦୀ ଯୁଗରେ ଏହି ଜାତୀୟତାବାଦର ପ୍ରତିଷ୍ଠା ଓ ବିକାଶ ପାଇଁ ଏହା ଭିତରେ ରାଜନୈତିକ ଚେତନା ମିଶାଇ ଦିଆଗଲା । ଭାରତର ସ୍ୱାଧୀନତା ଆନ୍ଦୋଳନ ପାଇଁ ଯେଉଁ ଉଦ୍ଦୀପ୍ତ ଭାବାବେଗର ଆବଶ୍ୟକତା ଥିଲା ତାହା ସତ୍ୟବାଦୀ ଯୁଗର ଜାତୀୟତାବାଦୀ କବିମାନେ ସେମାନଙ୍କ ସାହିତ୍ୟ ମାଧ୍ୟମରେ ପୂରଣ କରିଥିଲେ ।

୧୯୦୩ରେ ଓଡ଼ିଶାର ଭୌଗୋଳିକ ତଥା ଭାଷାଗତ ଏକତ୍ରୀକରଣ ପାଇଁ ଯେଉଁ ଆନ୍ଦୋଳନର ସୂତ୍ରପାତ ଘଟିଥିଲା ତାହା ଦ୍ୱାରା ସତ୍ୟବାଦୀର ସାହିତ୍ୟିକଗଣ ଅଧିକ ପ୍ରୋତ୍ସାହିତ ହୋଇଥିଲେ । ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମହାପାତ୍ର ପ୍ରମୁଖ ସତ୍ୟବାଦୀ ଗୋଷ୍ଠୀର ସାଧକ କବିବୃନ୍ଦ ଏକ ବିଶେଷ ଜାଗରଣ ସୃଷ୍ଟି କରିଥିଲେ । ବିଶ୍ୱଯୁଦ୍ଧ ପରେ ଭାରତୀୟ ଜନମାନସରେ ଯେଉଁ ନୂତନ ଚେତନାର ସୂତ୍ରପାତ ହେଲା ତଥା ଗାନ୍ଧିଜୀ ଯେଉଁ ଅସହଯୋଗ ଅହିଂସା ଆନ୍ଦୋଳନ ଆରମ୍ଭ କଲେ ତା'ର ପ୍ରତ୍ୟକ୍ଷ ପ୍ରଭାବ ସତ୍ୟବାଦୀ ଗୋଷ୍ଠୀର କବିମାନଙ୍କୁ ପ୍ରୋତ୍ସାହିତ କରିଥିଲା । ସତ୍ୟବାଦୀର ଗୋପବନ୍ଧୁ ପ୍ରମୁଖ ସାଧକମାନେ ଭାରତୀୟ ମୁକ୍ତି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ଓ ଓଡ଼ିଶାରେ ସେହି ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଥିଲେ । ଦେଶକୁ, ଜାତିକୁ, ନିଜର ମାତୃଭାଷାକୁ ଶ୍ରଦ୍ଧା

ସ୍ଥାପନ କରିବାର ଏକ ଉଚ୍ଚ ସଂକଳ୍ପ ଏମାନଙ୍କ ସାହିତ୍ୟର ଅନ୍ୟତମ ଆଦର୍ଶ ଥିଲା । ୧୯୧୩ ମସିହାରେ ରବୀନ୍ଦ୍ରନାଥଙ୍କର ନୋବେଲ ପୁରସ୍କାର ଲାଭ କରିବା ଘଟଣା ସମଗ୍ର ଭାରତୀୟ ସାହିତ୍ୟ ଜଗତକୁ ଯଥେଷ୍ଟ ଉଷ୍ମ ଉତ୍ସାହରେ ଭରି ଦେଇଥିଲା ।

ସତ୍ୟବାଦୀ ସାଧକମାନେ ସାହିତ୍ୟ ଜରିଆରେ ଦେଶସେବାର ମନ୍ତ୍ର ପ୍ରଚାର କଲେ । ସାହିତ୍ୟକୁ ସମାଜ ସଂସ୍କାରର ମାଧ୍ୟମ କଲେ । ଓଡ଼ିଶା ତଥା ଭାରତର ସଂସ୍କୃତିକୁ ଧରି ରଖିବା ପାଇଁ ପ୍ରୟାସ କଲେ । ସାଧାରଣ ଲୋକଙ୍କର ବ୍ୟଥା ବେଦନାର ଚିତ୍ରକୁ ସତ୍ୟବାଦୀ ଗୋଷ୍ଠୀର କବିମାନେ ରୂପାୟିତ କଲେ । ଓଡ଼ିଆ ସାହିତ୍ୟ ଜରିଆରେ ଓଡ଼ିଆଜାତି ଓ ଓଡ଼ିଶା ପ୍ରଦେଶର ପୁନର୍ଗଠନର ଆନ୍ଦୋଳନ ଗଢ଼ିଉଠିଲା ।

ଉତ୍ତର ଓ ପୂର୍ବ ଭାରତରେ ସେତେବେଳେ ପ୍ରେମଚନ୍ଦ, କାଜିନଜରୁଲ୍ ଇସ୍‌ଲାମ୍, ରବୀନ୍ଦ୍ରନାଥ, ମାଇକେଲ ମଧୁସୂଦନ, ଇକ୍‌ବାଲ୍ ଆଦି ଦେଶାତ୍ମବୋଧ କବିତା ରଚନା କରି ଭାରତୀୟ ଜନମାନସକୁ ବିପ୍ଳବରେ ଝାସଦେବା ପାଇଁ ପ୍ରୋତ୍ସାହିତ କଲେ । ଗାନ୍ଧି, ନେହେରୁ, ଚିତ୍ତରଞ୍ଜନ, ମୋତିଲାଲ ପ୍ରମୁଖ ନେତୃବର୍ଗ ବାସ୍ତବରେ ଭାରତର ପ୍ରତି ପ୍ରାନ୍ତକୁ ଯାଇ ମୁକ୍ତି ଆନ୍ଦୋଳନର ସୂତ୍ରପାତ କଲେ । ଓଡ଼ିଶାର ମଧ ସାହିତ୍ୟିକମାନେ ଏହି ଭାବରେ ଉଦ୍‌ବୁଦ୍ଧ ହେଲେ । ଓଡ଼ିଶାର ଗୋପବନ୍ଧୁ, ମଧୁସୂଦନ, ଗୋଦାବରୀଶ, ବିଶ୍ୱନାଥ, ନୀଳକଣ୍ଠ, ବ୍ରଜସୁନ୍ଦର, ଗଙ୍ଗାଧର ପ୍ରମୁଖ ସାରସ୍ୱତ ପୁରୁଷବୃନ୍ଦ ଏହି କ୍ରାନ୍ତିର ବାର୍ତ୍ତାକୁ ସାହିତ୍ୟ ଜରିଆରେ ପ୍ରଚାର କଲେ । ସାହିତ୍ୟ ଆଉ କେବଳ କବିର ବ୍ୟକ୍ତିଗତ କଳ୍ପନାର ସାମଗ୍ରୀ ନହୋଇ ଜାତି ଗଠନର ମାଧ୍ୟମ ହେଲା ।

କିନ୍ତୁ ସତ୍ୟବାଦୀ ଯୁଗର ଅଭ୍ୟୁତ୍‌ଥାନ ପରେ ପରେ ଭୟାବହ ବିଶ୍ୱଯୁଦ୍ଧ, ଭାରତର ମୁକ୍ତି ସଂଗ୍ରାମ ଜନିତ ରକ୍ତପାତ ସବୁଜ କବିଙ୍କୁ ସ୍ୱପ୍ନାଚାରୀ ହେବାପାଇଁ ଯେପରି ବାଧ କରିଛି । ମଣିଷ ଆଗରେ ବୃହତ୍ତର କର୍ମାଙ୍ଗନ ଓ ତା'ର ବାସ୍ତବ ଆହ୍ୱାନ ପ୍ରତି ଉଦାସୀନ ରହି ଓଡ଼ିଶାର ସବୁଜମାନେ ଅଧିକ ସ୍ୱପ୍ନପ୍ରବଣ ହୋଇ ପଡ଼ିଲେ । ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ ସବୁଜ ସାହିତ୍ୟର ସୃଷ୍ଟି ସମ୍ଭବ ହେଲା ଓ ଯୁଦ୍ଧ ପରେ ସବୁଜମାନେ ସ୍ୱପ୍ନରେ ବିଳାସ କରିବାକୁ ଲାଗିଲେ ।

ସବୁଜ ଶବ୍ଦଟି ତାରୁଣ୍ୟର ପ୍ରତୀକ । ସ୍ୱପ୍ନ ଓ କଳ୍ପନାର ପ୍ରତୀକ । ବାସ୍ତବ ବିଶ୍ୱରୁ ଦୂରତମ ପୃଥିବୀ ଆଡ଼କୁ ଯିବାର ସ୍ୱପ୍ନ ସେମାନଙ୍କୁ ଅଧୀର କରୁଥିଲା ଓ ସେମାନଙ୍କ ସାହିତ୍ୟରେ ସବୁଜମାନେ ସେଇ ସ୍ୱପ୍ନର ଗୀତ ଗାଇଛନ୍ତି କେବଳ । କାଳିନ୍ଦୀଚରଣ ଯୌବନର ପୂଜା କରି ଗାଇଛନ୍ତି :

'ଆକାଶ ଭୁବନ ବସୁନ୍ଧରା
ତୋଲାଗି ସେ ମୋ ପ୍ରେମ ପସରା
ତୁ ଯହିଁ ନାହୁଁ ଲୋ ପ୍ରିୟେ, ନାହିଁ ବିଶ୍ୱ
ନାହିଁ ନାହିଁ ଏ ଆକାଶ ଭୂଇଁ
ଶୂନ୍ୟ ସବୁ ଚରାଚର, ନାହିଁ ନାହିଁ କିଛି ଏଥି
ନାହିଁ ନିଜେ ମୁହିଁ ।'

ସବୁଜ ବା ଶ୍ୟାମଳ ବର୍ଣ୍ଣ ଜୀବନର ତାରୁଣ୍ୟର ପ୍ରତୀକ ଭାବେ ଗୃହୀତ ହୋଇଛି । ବଙ୍ଗଳାରେ ସବୁଜ ଯୁଗର ଅନ୍ୟତମ କବି ଓ ଲେଖକ ପ୍ରମଥ ଚୌଧୁରୀଙ୍କ ମତରେ - 'ବାଇଗିଣୀ କିଶଳୟର ରଙ୍ଗ, ଜୀବନର ପୂର୍ବରାଗର ରଙ୍ଗ, ଲାଲ ରକ୍ତର ରଙ୍ଗ, ନୀଳ ଆକାଶର ରଙ୍ଗ, ଅନନ୍ତର ରଙ୍ଗ, ପୀତ ଶୁଷ୍କ ପତ୍ରର ରଙ୍ଗ, ମୃତ୍ୟୁର ରଙ୍ଗ; କିନ୍ତୁ ସବୁଜ ହେଉଛି ନବୀନ ପତ୍ରର ରଙ୍ଗ, ରସର ଓ ପ୍ରାଣର ଯୁଗପତ୍ ଲକ୍ଷଣ ଓ ବ୍ୟକ୍ତି । ତା'ର ଦକ୍ଷିଣରେ ନୀଳ ଆଉ ବାମରେ ପୀତ, ତା'ର ପୂର୍ବ ସୀମାରେ ବାଇଗଣୀ ଓ ପଶ୍ଚିମ ସୀମାରେ ଲାଲ । ଅନ୍ତ ଓ ଅନନ୍ତ ମଧ୍ୟରେ ପୂର୍ବ ଓ ପଶ୍ଚିମ ମଧ୍ୟରେ, ସ୍ମୃତି ଓ ଆଶା ମଧ୍ୟରେ ମଧ୍ୟସ୍ଥତା କରିବା ହେଉଛି ସବୁଜର; ଅର୍ଥାତ୍ ସରସ ପ୍ରାଣର ସୁଧର୍ମ' । (ସବୁଜ ପତ୍ର - ପ୍ରବନ୍ଧ ସଂଗ୍ରହ)

ସବୁଜମାନେ ଥିଲେ ରାଧାନାଥୀ ତଥା ସତ୍ୟବାଦୀ ଗୋଷ୍ଠୀର ଜାତୀୟତାବାଦର ବିରୋଧୀ । ଜୀବନ ସୁନ୍ଦର, ଜୀବନର ସ୍ୱପ୍ନ ଓ ଯୌବନ ସୁନ୍ଦର - ଏହିପରି ଅନୁଭବ ପ୍ରତି ସବୁଜମାନେ ଅଧିକ ବିଶ୍ୱସ୍ତ ଥିଲେ । ରାଧାନାଥ ଉତ୍କଳ ଅତୀତର ଯେଉଁ ଗୌରବାବହ ଗାଥା ସବୁ ଗାଇଛନ୍ତି, ସତ୍ୟବାଦୀର ସାଧକମାନେ ଜାତିର ମୁକ୍ତି ଓ ପ୍ରଗତି ପାଇଁ ଯେଉଁ ଗମ୍ଭୀର ଦେଶ ପ୍ରାଣତାର କଥା କହିଛନ୍ତି ସବୁଜମାନେ ସେଇ ପରମ୍ପରାର ଉତ୍ତରଣକୁ ତ୍ୱରାନ୍ୱିତ କରିପାରି ନାହାନ୍ତି ; ବରଂ ସେମାନେ ଯୌବନର ତରଳ ଗୀତ ଗାଇବାକୁ ଅଧିକ ପସନ୍ଦ କରିଛନ୍ତି । ରାଧାନାଥୀ ପ୍ରେମର ଆଦର୍ଶକୁ ମଧ୍ୟ ସେମାନେ ସଂପୂର୍ଣ୍ଣରୂପେ ମାନି ନାହାନ୍ତି । ସବୁଜମାନେ ସେମାନଙ୍କ ଜୀବନ ଉଲ୍ଲାସ ଓ ଯୌବନର ଉଚ୍ଛ୍ୱାସକୁ ଚତୁର୍ଦ୍ଦିଗରେ ଖେଳାଇ ଦେଉଥିବା ସତ୍ତ୍ୱେ ସଂଖ୍ୟାରେ ଯଥେଷ୍ଟ କମ୍ ଥିଲେ । ସବୁଜମାନଙ୍କୁ ସେତେବେଳେ ରକ୍ଷଣଶୀଳତା ପାଇଁ ହେଉ କି ଅନ୍ୟ କୌଣସି କାରଣରୁ ହେଉ ବିଶେଷ ଜନ ସମର୍ଥନ ମିଳୁନଥିଲା । ସବୁଜଦଳର ଅନ୍ୟତମ ପୃଷ୍ଠପୋଷକ ଉତ୍କଳ ସାହିତ୍ୟର ବରେଣ୍ୟ ସମ୍ପାଦକ ବିଶ୍ୱନାଥ କର କହିଥିଲେ 'ସବୁଜ ସାହିତ୍ୟ ସମିତି କଥା- ସାହିତ୍ୟ ଦିଗରେ ଅନେକ କାମ କରୁଅଛନ୍ତି । ଗଳ୍ପ ଓ ଉପନ୍ୟାସର ବହି ପ୍ରକାଶ କରୁଅଛନ୍ତି । ତଥାପି ତାଙ୍କର ସଂଖ୍ୟା ଏତେ କମ୍ ଯେ ତାଦ୍ୱାରା କୌଣସି ମାସ୍ ଲିଟେରାରୀ ପ୍ରୋପାଗଣ୍ଡା ସମ୍ଭବ ନୁହେଁ । xx...ଏସବୁ ପୁସ୍ତକମାନଙ୍କ ମଧ୍ୟରୁ ଅଧିକାଂଶ ନିମ୍ନସ୍ତରର । ଏଥିରେ ଭାଷା କିଂବା ରୁଚିର ଆଭିଜାତ୍ୟର ଏକାନ୍ତ ଅଭାବ ପରିଲକ୍ଷିତ ହୁଏ ।'

ସବୁଜ ଗୋଷ୍ଠୀଙ୍କ ସାହିତ୍ୟ ଓଡ଼ିଶାରେ ସବୁଜ ସାହିତ୍ୟ ନାମରେ ପରିଗଣିତ ହେଲା । ସବୁଜ ସାହିତ୍ୟର ପ୍ରାଣଶକ୍ତି ପ୍ରଚଣ୍ଡ ଥିଲା । କାଳିନ୍ଦୀଚରଣ ତାଙ୍କ ଆତ୍ମଜୀବନୀ 'ଅଙ୍ଗେ ଯାହା

ନିଭାଇଛି'ରେ ଉଲ୍ଲେଖ କରିଛନ୍ତି ଯେ, ଏହି ସବୁଜ ଗୋଷ୍ଠୀ ଗୋଟିଏ ପ୍ରକାର ସାହିତ୍ୟିକ ଆଡ୍ଡା ଥିଲା । ଅନ୍ନଦାଶଙ୍କର ରହସ୍ୟରେ କହନ୍ତି ଯୀଶୁଖ୍ରୀଷ୍ଟଙ୍କ ଯେପରି ଜନ୍ମ ହୋଇଥିଲା ଗୋଟିଏ ଘୋଡ଼ାଶାଳରେ, ସବୁଜ ସାହିତ୍ୟର ଜନ୍ମ ସେହିପରି ଏକ ପଶୁ ଡାକ୍ତରଖାନାରେ । ସବୁଜ ଗୋଷ୍ଠୀଙ୍କର ସାହିତ୍ୟିକ ଆଦର୍ଶ ଏକ କ୍ଷଣିକ ପ୍ରବଣତା ମାତ୍ର ନଥିଲା । ତା'ର ଏକ ସ୍ପଷ୍ଟ ଲକ୍ଷ୍ୟଥିଲା । କିଛି ସଂକଳ୍ପ ଓ ଅଙ୍ଗୀକାରବଦ୍ଧତା ମଧ୍ୟ ଥିଲା । ସବୁଜମାନେ ଯେପରି ସ୍ୱପ୍ନବାଦୀଥିଲେ ସେହିପରି ସଂସ୍କାରପ୍ରୟାସୀ ମଧ୍ୟ ଥିଲେ । ସେମାନେ ନୂତନତାର ଆରାଧନା କରୁଥିଲେ ମଧ୍ୟ ଅତୀତ ପ୍ରତି ସମ୍ମୋହିତ ହୋଇଥିଲେ । ବିଭିନ୍ନ କ୍ଷେତ୍ରରେ ସାମାଜିକ ମୂଲ୍ୟବୋଧର ପ୍ରତିଷ୍ଠା ସେମାନଙ୍କର ଲକ୍ଷ୍ୟଥିଲା ବୋଲି କାଳିନ୍ଦୀଚରଣ ଏକ ସାକ୍ଷାତକାରରେ ଉଲ୍ଲେଖ କରିଛନ୍ତି । ସବୁଜମାନେ ସବୁକଥାକୁ ଆଗ୍ରହୀ ଥିଲେ । ଭାରତୀୟ ସାମାଜିକ ଜାଗରଣ ପ୍ରତି ସେମାନଙ୍କ ଯଥେଷ୍ଟ ଉନ୍ମୁଖତା ମଧ୍ୟ ଥିଲା ଓ ପୃଥିବୀର ଚିନ୍ତା ବିପ୍ଳବ ବିଷୟରେ ସେମାନେ ବହୁ ଭାବରେ ସଚେତନ ମଧ୍ୟ ଥିଲେ ।

ସବୁଜମାନେ କେତେକାଂଶରେ ବଙ୍ଗୀୟ ଭାଷାସାହିତ୍ୟ ପ୍ରତି ଆସକ୍ତ ହୋଇଥିବା କଥା ସେତେବେଳେ କେତେଜଣ ଲକ୍ଷ୍ୟ କରିଥିଲେ । ସବୁଜମାନଙ୍କର ଅନ୍ୟତମ ଉତ୍ସାହଦାତା ବିଶ୍ୱନାଥ କର ସବୁଜମାନଙ୍କର ଏହି ବଙ୍ଗଳାପ୍ରବଣତା ଯୋଗୁଁ ସେମାନଙ୍କୁ ବଡ଼ ଅପସନ୍ଦ କରିଥିଲେ । ତଥାପି ସବୁଜମାନେ ଯଥାସମ୍ଭବ ଏକ ନୂତନ ଭାଷା ଶୈଳୀ ଓ ନୂତନ ଛନ୍ଦ ସୃଷ୍ଟି ପାଇଁ ଉଦ୍ୟମ କରିଥିଲେ । ଯେଉଁଥିପାଇଁ ସେମାନଙ୍କ ଭାଷାରେ ଫୁଟନ୍ତା ଫୁଲର ସୁଷମା ରହିଛି ବୋଲି ଅନେକ ମନେ କରୁଥିଲେ । ସେମାନଙ୍କ ଛନ୍ଦ ଅଧିକ ମୁକ୍ତ ଓ ପ୍ରସାରଣଶୀଳ ଥିଲା ଓ ସେଥିରେ ଉନ୍ମାଦକାରୀ ଝଙ୍କାର ମଧ୍ୟ ଥିଲା । ତାହା କିନ୍ତୁ ବଙ୍ଗ ଭାଷାର ଅଧିକ ସନ୍ନିକଟ ବୋଲି ମନେ ହେଉଥିଲା । ସବୁଜମାନେ ସେମାନଙ୍କ ଛନ୍ଦ ସୃଷ୍ଟିରେ ଓଡ଼ିଆ ଭାଷାର ଧ୍ୱନିତତ୍ତ୍ୱ ଓ ଉଚ୍ଚାରଣ ନିୟମ ବେଳେ ବେଳେ ମାନୁ ନଥିଲେ । ତଥାପି ଏସବୁକୁ ସବୁଜମାନଙ୍କର ପୃଷ୍ଠପୋଷକମାନେ ସବୁଜକବିଙ୍କ ଆହରଣ-କଳା ବୋଲି ମନେ କରୁଥିଲେ ।

ସବୁଜମାନେ ଯୌବନର ବନ୍ଦନାଗୀତି ଗାଉଥିବା ସତ୍ତ୍ୱେ ସେମାନଙ୍କ କବିତାରେ କିଛି ଅଧିକ ନୈରାଶ୍ୟ ଥିଲା । ୧୯୨୧ ରୁ ୧୯୩୫ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ସବୁଜଗୋଷ୍ଠୀ ଅତ୍ୟନ୍ତ ସକ୍ରିୟ ଥିଲା । ସବୁଜମାନେ ଅଧିକ ସ୍ୱପ୍ନବିଳାସୀ ଥିଲେ ଏବଂ ଏକ ରୋମାଣ୍ଟିକ୍ ବିଧୂର -ବିଷାଦ ଭାବରେ ଘାରି ହେଉଥିଲେ ।

ସବୁଜମାନେ ପୁଣି କେତେକାଂଶରେ ରହସ୍ୟବାଦୀ ଥିଲେ । ସେମାନେ ଦୂର ନିର୍ଜନ ପୃଥିବୀର ଗୀତ ଗାଇଛନ୍ତି ଓ ସେଥିପ୍ରତି ଆସକ୍ତ ହୋଇଛନ୍ତି ମଧ୍ୟ । ସମଗ୍ର ଭାରତରେ ଏହି ସବୁଜ ସାହିତ୍ୟାଦର୍ଶ ପରି ଅନ୍ୟ ବହୁ ସାହିତ୍ୟାଦର୍ଶ ଥିଲା । ଏହି ସବୁ ସାହିତ୍ୟାଦର୍ଶ ବିଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ନାଁରେ ପରିଚିତ । ହିନ୍ଦୀ ସାହିତ୍ୟରେ ଛାୟାବାଦୀ ଯୁଗ, ବଙ୍ଗୀୟ ସାହିତ୍ୟରେ କଲ୍ଲୋଳଗୋଷ୍ଠୀ, ମରାଠୀ ସାହିତ୍ୟରେ ରବିକିରଣ ମଣ୍ଡଳ ଗୋଷ୍ଠୀ ସବୁଜଗୋଷ୍ଠୀଙ୍କ ସହ ପ୍ରାୟ ସମାନ ଥିଲେ । ୧୯୨୦ ମସିହା ବେଳକୁ ହିନ୍ଦୀ ସାହିତ୍ୟରେ ଏହି ଛାୟାବାଦୀ

ଯୁଗର ଆରମ୍ଭ ହୋଇଥିଲା । ନିରାଳା (ସୂର୍ଯ୍ୟକାନ୍ତ ତ୍ରିପାଠୀ) - ୧୮୯୬, ସୁମିତ୍ରାନନ୍ଦନ ପନ୍ଥ ୧୯୦୦, ଜୟଶଙ୍କର ପ୍ରସାଦ ୧୮୮୯-୧୯୩୭, ମହାଦେବୀ ବର୍ମା ୧୯୦୭ ଆଦି ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ ଛାୟାବାଦୀ କବି ଥିଲେ । ଛାୟାବାଦୀ କବିମାନେ ହିନ୍ଦୀ ସାହିତ୍ୟରେ ନାରୀ ଓ ପ୍ରକୃତିର ଚମତ୍କାର ବର୍ଣ୍ଣନା କରିଛନ୍ତି । ସେମାନେ ନାରୀ ପ୍ରେମ ଓ ପ୍ରକୃତିର ସୌନ୍ଦର୍ଯ୍ୟ ପ୍ରତି ଅଧିକ ଆସକ୍ତ ଥିଲେ । ଏହି ଛାୟାବାଦୀ ଯୁଗର କବିମାନଙ୍କୁ କେତେକ ପୁଣି ଓଡ଼ିଶାର ସବୁଜବାଦୀ କବିମାନଙ୍କ ପରି ପଳାୟନପନ୍ଥୀ ବୋଲି କହିଛନ୍ତି । ମହାଦେବୀ ବର୍ମା ଛାୟାବାଦୀମାନଙ୍କର ଏହି ପଳାୟନ ମନୋଭାବକୁ ସୂକ୍ଷ୍ମତର ଚେତନା ତଥା ସୌନ୍ଦର୍ଯ୍ୟାନୁଭୂତି ପ୍ରତି ଏକପ୍ରକାର ଚେତନାଗତ ଉନ୍ମୁଖତା ବୋଲି ବର୍ଣ୍ଣନା କରିଛନ୍ତି । ଦୀନକର, ବାଳକୃଷ୍ଣ ଶର୍ମା ତଥା ଭଗବତୀ ଚରଣ ବର୍ମା ପ୍ରମୁଖ କବିଗଣ ମଧ୍ୟ ହିନ୍ଦୀ ସାହିତ୍ୟରେ ଏହି ଛାୟାବାଦୀ ଗୋଷ୍ଠୀର । ରାମଶରଣ ଗୁପ୍ତ, ଗୁରୁ ଭକ୍ତ ସିଂ, ବଚନ ପ୍ରମୁଖ ସାହିତ୍ୟିକମାନେ ଏହି ଛାୟାବାଦୀ ଯୁଗର ପ୍ରତିଷ୍ଠାକୁ ଆହୁରି ପୁଷ୍ଟ କରିଛନ୍ତି । ଏମାନେ ଗାନ୍ଧିଜୀଙ୍କ ଆଦର୍ଶ ଦ୍ୱାରା ମଧ୍ୟ ଅନୁପ୍ରାଣିତ ହୋଇଥିଲେ ଓ ଏମାନଙ୍କ ଦ୍ୱାରା ହିନ୍ଦୀ ଗଦ୍ୟ ସାହିତ୍ୟର ବିକାଶ ମଧ୍ୟ ହୋଇଥିଲା ।

ସେହିପରି ବଙ୍ଗଳାରେ କଲ୍ଲୋଳ ଗୋଷ୍ଠୀର ମୁଖପତ୍ର ସବୁଜପତ୍ର ୧୯୧୮ ମସିହାରେ ପ୍ରକାଶିତ ହୋଇଥିଲା । ଏହି ପତ୍ରିକାର ପ୍ରଚ୍ଛଦରେ ଗୋଟିଏ ତାଳପତ୍ରର ଚିତ୍ର ରହୁଥିଲା । ଏହି ଗୋଷ୍ଠୀର ଅଧିକାଂଶ ଥିଲେ ତରୁଣ ଓ ରବୀନ୍ଦ୍ର ଅନୁରକ୍ତ । ନୃପେନ୍ଦ୍ରକୃଷ୍ଣ ଚଟ୍ଟୋପାଧ୍ୟାୟ, ଅଚିନ୍ତ୍ୟ କୁମାର ସେନଗୁପ୍ତ, ଗୋକୁଳଚନ୍ଦ୍ର ନାଗ, ଦୀନେଶ ରଞ୍ଜନ ଦାସ, ଭୂପତି ଚୌଧୁରୀ, ଶକ୍ତି ପ୍ରସାଦ ସେନ୍ ଆଦି ଏହି କଲ୍ଲୋଳ ଗୋଷ୍ଠୀର କବି ଥିଲେ । ସେମାନେ ସବୁ ମାଟିର କଥା, ମଣିଷର କଥା, ମଣିଷର ସ୍ୱପ୍ନବିଳାସୀ ମନର କଥା କହୁଥିଲେ । କଲ୍ଲୋଳ କହିଲେ ବୁଝାଯାଉଥିଲା ଉଚ୍ଛଳ ଯୌବନର ସ୍ପର୍ଦ୍ଧିତ ଉତ୍ସୁକତା । ପ୍ରାଣବନ୍ତାର ତରଙ୍ଗ, ଗଭୀର ଆନନ୍ଦାନୁଭୂତିର ସ୍ପନ୍ଦନ । ଏମାନେ ସମସ୍ତେ ପ୍ରାୟ ସେମାନଙ୍କ ଚିନ୍ତା ଓ ଚେତନାରେ ଅଗ୍ରଗାମୀ ଥିଲେ ଓ ସମସ୍ତେ ପ୍ରାୟ କ୍ରିୟାଶୀଳ ଥିଲେ ।

ଚିନ୍ତାରେ ଓ କର୍ମରେ ସେମାନେ ନୂତନତାର ସମର୍ଥକ ଥିଲେ । କଲ୍ଲୋଳ ଗୋଷ୍ଠୀର କବିମାନେ ଥିଲେ ଅନ୍ଧ ଗତାନୁଗତିକତା ବିରୁଦ୍ଧରେ ଅଧିକ ବିଦ୍ରୋହୀ । ସେମାନଙ୍କର ବାସ୍ତବ ସୃଜନ ଇଚ୍ଛା ଥିଲା । ଏମାନଙ୍କ ମଧ୍ୟରୁ କେତେକ ରବୀନ୍ଦ୍ର ବିରୋଧୀ ମଧ୍ୟ ଥିଲେ । ପ୍ରମଥ ଚୌଧୁରୀ, ରବୀନ୍ଦ୍ର ଶୈଳୀଠାରୁ ନିଜକୁ ଅପସାରି ନେଇଥିଲେ ।

ଏହି ସାହିତ୍ୟିକ ଗୋଷ୍ଠୀ ସର୍ବଦା ନୂତନତା ପ୍ରତି ବେଶୀ ଆଗ୍ରହୀ ହେଲେ । ଏମାନେ ପ୍ରାଚୀନ କବିତାର ଆଙ୍ଗିକତାକୁ ବର୍ଜନ କରିବା ପାଇଁ ସଚେଷ୍ଟ ହେଲେ । ରବୀନ୍ଦ୍ରନାଥଙ୍କ ବନ୍ଧୁ ଓ ସହକର୍ମୀ ତଥା ବଙ୍ଗଳାର ବିଶିଷ୍ଟ ଗଦ୍ୟ ଲେଖକ ପ୍ରମଥ ଚୌଧୁରୀଙ୍କ ସବୁଜ ପତ୍ରିକାରୁ ଏମାନେ ସବୁଜ ଶବ୍ଦଟିକୁ ଆଣିଥିଲେ । ସବୁଜ ଥିଲା ଯୌବନର ସ୍ୱପ୍ନ ତଥା ବୈପ୍ଳବିକ ଦୃଷ୍ଟିଭଙ୍ଗୀର ପ୍ରତୀକ । ଏହା ଥିଲା ବରଂ ସବୁଜମାନଙ୍କର ସ୍ୱପ୍ନ ଓ ଆଦର୍ଶର ପ୍ରତୀକ । ସବୁଜମାନେ ସୌନ୍ଦର୍ଯ୍ୟ ପ୍ରେମ ଓ ଯୌବନପ୍ରତି ଯେତେ ଉନ୍ମୁଖ ଥିଲେ ସାମାଜିକ ପରିବର୍ତ୍ତନ

ପାଇଁ ମଧ୍ୟ ସେମାନେ ସେତିକି ପ୍ରୟାସୀ ଥିଲେ । ସାମାଜିକ ପ୍ରଥାଗତ ଅନେକ କୁସଂସ୍କାର ଦୂରୀକରଣ ଦିଗରେ ମଧ୍ୟ ସେମାନେ ସଚେଷ୍ଟ ଥିଲେ ।

ଗୋଟିଏ ଜାତିର ପ୍ରାଣଗତ ଅବସନ୍ନତା ତଥା ମାନସିକ ବାର୍ଦ୍ଧକ୍ୟ ଦୂର କରିବା ପାଇଁ କାଳିନ୍ଦୀଚରଣଙ୍କ ସମେତ ସବୁଜଗୋଷ୍ଠୀର କବିମାନେ ସେମାନଙ୍କ ସାହିତ୍ୟ ସାଧନା ଜରିଆରେ ଚେଷ୍ଟା କରିଛନ୍ତି । ପ୍ରତ୍ୟେକ ପ୍ରାଣର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ତଥା ତଜ୍ଜନିତ ସୃଜନଶୀଳତାକୁ ପ୍ରକଟନ କରିବା ପାଇଁ ସେମାନଙ୍କ ବାଣୀ ଓ ସାହିତ୍ୟିକ ଆଦର୍ଶ ଉଦ୍ଦିଷ୍ଟ ଥିଲା । ଏହି ରକ୍ତ ମାଂସ ଦେହରେ ଏତେ ସୁଷମା ଓ ପ୍ରାଣଶକ୍ତି ଭରି ରହିଛି ତା'ର ପରିସ୍ଫୁରଣ ଥିଲା ଏମାନଙ୍କ ଅନ୍ୟତମ ଆଦର୍ଶ । ୧୯୩୦ ବେଳକୁ ପାଞ୍ଚଜଣ ସବୁଜ ଗୋଷ୍ଠୀର କବି ସେମାନଙ୍କ କବିତାର ଏକ ସଂକଳନ ପ୍ରକାଶ କଲେ । ଏଥିରେ ଏକ ସମାନ ଦୃଷ୍ଟି ବା ଆଦର୍ଶ ଚିହ୍ନିତ ହୋଇପାରି ନଥିଲା । ସଂକଳିତ କବିତା ଗୁଡ଼ିକରେ ଅସମାନ ଆଦର୍ଶ ଓ ଦୃଷ୍ଟିଭଙ୍ଗୀ ଥିବା କାରଣରୁ ପାଠକମାନେ ଏହି ସବୁଜ କବିତା ସଂକଳନଟିକୁ ଖୁବ୍ ଶ୍ରଦ୍ଧାରେ ଗ୍ରହଣ କରିପାରି ନାହାନ୍ତି ।

କେତେକ ସମାଲୋଚକ ସବୁଜ ଦଳର ଚିନ୍ତା ଓ ଆଦର୍ଶକୁ ସ୍ୱଦେଶୀ ନ କହି ଅଧିକ ବିଦେଶୀ କହିଛନ୍ତି । ଛବିଳ ଉତ୍କଳର କୌଣସି ବିଶିଷ୍ଟ ଚିତ୍ର ସେମାନଙ୍କ କବିତାରେ ନାହିଁ । ସେମାନେ ଓଡ଼ିଶାର ନଦୀ, ଗିରି, ବଣ, ପାହାଡ଼ର ସୁଷମା ପ୍ରତି ଅତ୍ୟନ୍ତ ବୀତସ୍ପୃହ ଥିଲେ । ନିଜ ମାଟିର ଆତ୍ମୀୟତାକୁ ସେମାନେ ଅନୁଭବ କରିପାରି ନାହାନ୍ତି । ସେମାନେ ବିଦେଶୀର କଥା ବରଂ ବେଶୀ ଲେଖିଛନ୍ତି । ସବୁଜମାନଙ୍କର ଭାଷା ଓ ଛନ୍ଦର ତ୍ରୁଟି ବିଚ୍ୟୁତିକୁ ପରବର୍ତ୍ତୀ ସାହିତ୍ୟ ସମାଲୋଚକମାନେ ଲକ୍ଷ୍ୟ କରିଛନ୍ତି । ଏସବୁ ସତ୍ତ୍ୱେ ସବୁଜମାନେ ଓଡ଼ିଆ କବିତା ଧାରାରେ ଗୋଟିଏ ନୂଆ ପ୍ରକାରର ଛନ୍ଦ ତଥା ସାଙ୍ଗୀତିକତାର ପ୍ରବର୍ତ୍ତନ କରିଥିଲେ । ଏମାନଙ୍କ ଉପରେ ରବୀନ୍ଦ୍ରଙ୍କ ବିଶେଷ ପ୍ରଭାବ ରହିଥିଲା ।

ସବୁଜମାନଙ୍କ ମଧ୍ୟରେ କେତେକ ଦୃଷ୍ଟିରୁ ଅନ୍ନଦାଶଙ୍କରଙ୍କ କବିତା ଅଧିକ ସଫଳ ମନେହୁଏ । ତାଙ୍କର 'ପ୍ରଳୟ ପ୍ରେରଣା' କବିତାଟି ଅକୁଣ୍ଠ ପ୍ରଶଂସା ଦାବିକରେ । ଏଇଥିପାଇଁ ଯେ କବିତାଟିରେ ଏକ ସ୍ପଷ୍ଟ ସାମାଜିକ ଉଦ୍‌ଘୋଷଣା ଓ ଅଙ୍ଗୀକାରବଦ୍ଧତା ରହିଛି । ବୈକୁଣ୍ଠ ନାଥଙ୍କ କବିତା ବିଶେଷତଃ ତାଙ୍କ କାବ୍ୟ ସଞ୍ଚୟନର କବିତା ଶ୍ରବଣ ସୁଖଦାୟକ ହେଲେ ହେଁ ସେଥିରେ ସୁସ୍ପଷ୍ଟବାଣୀ ବା ମେସେଜ୍ ସ୍ପଷ୍ଟଭାବରେ କିଛି ନଥିଲାପରି ମନେ ହୁଏ । କାଳିନ୍ଦୀ ଏବଂ ବୈକୁଣ୍ଠନାଥଙ୍କ ସମେତ ସବୁଜମାନଙ୍କ ଅଧିକାଂଶ କବିତା କଳାତ୍ମକ ନହୋଇ ପ୍ରଚାରଧର୍ମୀ ହୋଇଛି ବୋଲି କୁହାଯାଏ ।

ସବୁଜମାନଙ୍କ ମଧ୍ୟରୁ କାଳିନ୍ଦୀଚରଣଙ୍କ ଲେଖନୀ ଅଜସ୍ରସ୍ରାବୀ । ସେ କବିତା ସହିତ ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧମାନ ରଚନା କରିଛନ୍ତି । କାଳିନ୍ଦୀଚରଣ ସେ ଦୃଷ୍ଟିରୁ ସବୁଜମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ; ଯିଏ ସୃଷ୍ଟିଧର୍ମୀ ଗଦ୍ୟ ରଚନା କରି ଓଡ଼ିଆ ଗଦ୍ୟ ସାହିତ୍ୟକୁ ମଧ୍ୟ ସମୃଦ୍ଧ କରିଛନ୍ତି । କାଳିନ୍ଦୀଚରଣଙ୍କ 'ମାଟିର ମଣିଷ' ଉପନ୍ୟାସ ତଥା 'ମାଂସର ବିଳାପ' ଗଳ୍ପ ସୃଷ୍ଟି କାଳକାଳ ଧରି ସବୁଜଯୁଗ ସହିତ କାଳିନ୍ଦୀଚରଣଙ୍କୁ ସ୍ମରଣକୁ ଆଣୁଥିବ ।

ସେତେବେଳେ ଭାରତୀ ତପୋବନ ସଂଘ, ପ୍ରଗତି ସଂଘ, ସବୁଜ ସାହିତ୍ୟ ସମିତି ଆଦି କେତେକ ଅଗ୍ରଗାମୀ ସାହିତ୍ୟ ଅନୁଷ୍ଠାନ ଗଢ଼ି ଉଠିଥିଲା । ସବୁଜ ସାହିତ୍ୟ ସମିତି ସଂସ୍ଥାଟି ଅଧିକ ପ୍ରଚାରିତ ହୋଇଯିବାରୁ ତାହା ସମସ୍ତଙ୍କର ଅଧିକ ପରିଚିତ ସଂସ୍ଥାରେ ପରିଣତ ହୋଇଥିଲା ।

ଏହି ସବୁଜ ଯୁଗ ପ୍ରସଙ୍ଗରେ ଏକ ସାହିତ୍ୟ ସଭାରେ ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ କହିଥିଲେ - '୧୯୨୧ରୁ ୧୯୩୫ ପର୍ଯ୍ୟନ୍ତ ପ୍ରାୟ ପନ୍ଦର ବର୍ଷ ମଧ୍ୟରେ ସେମାନଙ୍କ ସମବେତ ସାହିତ୍ୟ ସାଧନାକୁ ହୁଏତ ଭବିଷ୍ୟତ ଯଥେଷ୍ଟ ଗୁରୁତ୍ୱ ଦେବ ନାହିଁ, କିନ୍ତୁ ସାହିତ୍ୟ ଇତିହାସରେ ତା'ର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି ।' କାଳିନ୍ଦୀଚରଣ କହନ୍ତି, 'ତେଣୁ କେବଳ ନାମ ଉପରେ କାହାରି ଆପତ୍ତି ନଥିଲେ କୁନ୍ତଳାକୁମାରୀ ଓ ତତ୍‌ପରବର୍ତ୍ତୀ କବିମାନଙ୍କୁ ଏହି ଯୁଗର ଅନ୍ତର୍ଭୁକ୍ତ କରାଯାଇପାରେ । ଯଥାର୍ଥରେ ବିଚାରକଲେ କୁନ୍ତଳା ବୈକୁଣ୍ଠନାଥ ଓ ମାୟାଧର ପ୍ରମୁଖ କବିମାନେ ପ୍ରଥମ ମହାଯୁଦ୍ଧ ପୂର୍ବରୁ ଜନ୍ମଲାଭ କରିଥିଲେ ମଧ୍ୟ ତାଙ୍କ କବି ପ୍ରତିଭାର ବିକାଶ ଉଭୟ ଯୁଦ୍ଧ ମଧ୍ୟରେ ହିଁ ସଂଘଟିତ ହୋଇଛି ଏବଂ ସବୁଜ ଯୁଗ ଏହି ମଧ୍ୟବର୍ତ୍ତୀ ସମୟକୁ ଚିହ୍ନିତ କରିଥାଏ ।

# କବି କାଳିନ୍ଦୀଚରଣ

କାଳିନ୍ଦୀଚରଣଙ୍କ କବିତାଗୁଡ଼ିକ ମୁଖ୍ୟତଃ ସ୍ୱୈରବାଦୀ ତଥା ସବୁଜ ଆଦର୍ଶର ହୋଇଥିଲେ ହେଁ କବିତା ରଚନା କରିବାପାଇଁ ତାଙ୍କ ଚେତନା ଓ ମନୋଭୂମି ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ହୋଇଛି । ଭୟଙ୍କର ବିଶ୍ୱ ମହାସମରର ପ୍ରଭାବ, ଭାରତର ତଦାନୀନ୍ତନ ମୁକ୍ତି ସଂଗ୍ରାମ, ସମଗ୍ର ଭାରତରେ ଗାନ୍ଧିଜୀଙ୍କ ବହୁମୁଖୀ କାର୍ଯ୍ୟକ୍ରମ, ଓଡ଼ିଶାର ନାନା ଜାନପଦିକ ସମସ୍ୟା ଭିତରେ କାଳିନ୍ଦୀଚରଣ ଧ୍ୟାନସ୍ଥ ହୋଇଛନ୍ତି କବିତା ଲେଖିବା ପାଇଁ । ଉଲ୍ଲିଖିତ ପରିବେଶ ଓ ପରିସ୍ଥିତିର ଭାବମୁଦ୍ରା ପ୍ରତ୍ୟକ୍ଷ ଓ ପରୋକ୍ଷରେ କାଳିନ୍ଦୀଚରଣଙ୍କ କବିତାରେ ପ୍ରତୀକିତ ହୋଇଛି । କାଳିନ୍ଦୀଙ୍କ କବିତାରେ ଆମେ ପ୍ରେମ ଦେଖୁ ଓ ବିପ୍ଳବ ବି ଦେଖୁଁ । ତାଙ୍କ କବିତାର ରୋମାଣ୍ଟିକ ଚେତନା, ଶୈଶବ ପ୍ରତି ସମ୍ମୋହନ, ପ୍ରକୃତି ପ୍ରୀତି, ଗଭୀର ପଲ୍ଲୀ ସଂପ୍ରୀତି, ମାନବତାବାଦ ତଥା ରହସ୍ୟବାଦୀ ଅସୀମ ଉନ୍ମୁଖତା ପରିଲକ୍ଷିତ ହୁଏ ।

ତାଙ୍କର 'ମହାଦୀପ', 'ମନେନାହିଁ', 'କ୍ଷଣିକ ସତ୍ୟ' ଓ 'ଛୁରୀଟିଏ ଲୋଡ଼ା', କବିତା ସଂକଳନରେ ତାଙ୍କ ସମସାମୟିକ ଅନ୍ୟାନ୍ୟ ସବୁଜ ବନ୍ଧୁମାନଙ୍କ ପରି କିଛି ବୈଦେଶିକ ପ୍ରଭାବ ପରିଲକ୍ଷିତ ହୁଏ । ନିର୍ଦ୍ଦିଷ୍ଟ ଭାବେ ସମସାମୟିକ ବଙ୍ଗଳା କବିତାର ଆଙ୍ଗିକ ଓ ଆତ୍ମିକ ପ୍ରଭାବ ଅନ୍ୟାନ୍ୟ ପ୍ରମୁଖ ସବୁଜ କବିମାନଙ୍କ ପରି କାଳିନ୍ଦୀଙ୍କ କବିତାରେ ପରିଦୃଷ୍ଟ ହୋଇଛି । ତଥାପି ସବୁଜ କବିମାନଙ୍କ କବିତାଠାରୁ କାଳିନ୍ଦୀଚରଣଙ୍କ କବିତା ଅନେକାଂଶରେ ଅଧିକ ରସନିବିଡ଼ ଓ କାବ୍ୟିକ ହୋଇଛି । ଏପରିକି ବିଶିଷ୍ଟ କବି ବୈକୁଣ୍ଠନାଥଙ୍କ କବିତାଠାରୁ ମଧ୍ୟ କାଳିନ୍ଦୀଚରଣଙ୍କ କବିତା ଅଧିକ ଛଳ ଛଳ ଓ କାବ୍ୟିକ ହୋଇଛି । ତାଙ୍କର 'ମନେ ନାହିଁ' ଓ 'ଛୁରୀଟିଏ ଲୋଡ଼ା' କବିତା ଗ୍ରନ୍ଥରେ ସନ୍ନିବେଶିତ କବିତାଗୁଡ଼ିକ ଓଡ଼ିଶାର ପଲ୍ଲୀଜୀବନକୁ ଚିତ୍ରଣ କରିବାରେ ଅଧିକ ଆତ୍ମିକ ଓ ଅନ୍ତରଙ୍ଗ ମନେ ହୋଇଛି । କାଳିନ୍ଦୀ ଥିଲେ ଏକ ନିରୁତା ଛଳ ଛଳ କବି ପ୍ରାଣର ବ୍ୟକ୍ତିତ୍ୱଟିଏ । ତେବେ ତାଙ୍କର ଭାବୋଚ୍ଛଳ ପଦଗୁଡ଼ିକ ସ୍ୱଚ୍ଛନ୍ଦତା ଓ ସାବଲୀଳତାର ବନ୍ଧ ଭାଙ୍ଗି ଯଦୃଚ୍ଛା ମାଡ଼ିଯାଇ ନାହାନ୍ତି ।

ବକ୍ତବ୍ୟରେ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ସତ୍ତ୍ୱେ ରବୀନ୍ଦ୍ର ପ୍ରଭାବ ମଧ୍ୟ ଅନ୍ୟାନ୍ୟ ସବୁଜବନ୍ଧୁଙ୍କ ସହିତ କାଳିନ୍ଦୀଙ୍କ କବିତାରେ ଲକ୍ଷ୍ୟ କରାଯାଇପାରେ । ରବୀନ୍ଦ୍ର ଲେଖିଛନ୍ତି :-

'ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ
ଅସଂଖ୍ୟ ବନ୍ଧନ ମାଝେ ମହାନନ୍ଦମୟ,
ଲଭିବ ମୁକ୍ତିର ସ୍ୱାଦ' । - ମୁକ୍ତି ନୈବେଦ୍ୟ

ଅବିକଳ ସେହି ଆଦର୍ଶରେ ସେହି ଭାବଚେତନା ଥାଇ କାଳିନ୍ଦୀଚରଣ ତାଙ୍କ ପ୍ରସିଦ୍ଧ ପୁରୀ ମନ୍ଦିର କବିତାରେ ଲେଖିଛନ୍ତି -

'ମୃତ୍ୟୁ ପରେ ମୁକ୍ତି ନାହିଁ ମାଗେ
ବୈକୁଣ୍ଠ ନାହିଁ ଭଲ ଲାଗେ
ଏ ମର୍ତ୍ତ୍ୟ ଭୁବନ ମୋ ସ୍ନେହ ସଦନ
ଏ ଧରଣୀ ସୁଖମଣି' । - ପୁରୀ ମନ୍ଦିର

ଏହିପରି କାଳିନ୍ଦୀଚରଣ ତାଙ୍କ ସମୟର ଅଧିକାଂଶ ସବୁଜବନ୍ଧୁ ଏପରିକି ମାନସିଂହ, ସଚ୍ଚିରାଉତରାୟଙ୍କ କବିତାରେ ମଧ୍ୟ ରବୀନ୍ଦ୍ର ଓ ଅନ୍ୟାନ୍ୟ ପ୍ରମୁଖ ସମସାମୟିକ ବଙ୍ଗୀୟ କବିତାର ପ୍ରଭାବ ରହିଛି । ବଙ୍ଗଳା କବିତାର ଛନ୍ଦ ଓ ଭାବଭଙ୍ଗୀ ସବୁଜ କବିଙ୍କଠାରେ ବିଶେଷ ପରିଲକ୍ଷିତ ହୋଇଛି । ଏ ପ୍ରକାର ପ୍ରଭାବ ପରୀକ୍ଷା ସତ୍ତ୍ୱେ ସବୁଜ କବିତା ଅଧିକ ସରସ ଓ ଜୀବନ୍ତ ମନେ ହୋଇଛି । କାଳିନ୍ଦୀଚରଣଙ୍କ 'ମନେ ନାହିଁ' କବିତା ଗ୍ରନ୍ଥର କବିତାଗୁଡ଼ିକ ପ୍ରଭାବ ଓ ପରୀକ୍ଷା ନିରୀକ୍ଷାର ଊର୍ଦ୍ଧ୍ୱରେ ତାଙ୍କ ବିହ୍ୱଳ ସମ୍ମୋହନର ପ୍ରତିଲିପି । ପ୍ରତିଟି କବିତା ଶୈଶବ ପ୍ରତି ସମ୍ମୋହିତ ହେବାରେ ସନ୍ଦିତ ଓ ଗତିଶୀଳ ହୋଇଛି ।

'ଜଳେ ଥଳେ କେତେ ନିରେଖିଲି
ନୂଆ ଭାବର ନୂଆ ଛବି
ନୂଆ ନୂଆ ରୂପ କଲି ପୂଜା
କଲି ଆଦର ସୁଖ ଲଭି' ।

'ବାତାୟନେ ପଥେ ଉଡ଼ିଥିଲା ଚାରୁ ପଣତ ଦେଖି ତାହା,
ପରମ ପୁଲକେ ପରାଣ ହେଲା ଆନତ ସେ କି ମାୟା;
କୁଟୀର ଦୁଆରେ ବିଲୋକି ସୁଷମା ସାଥୀର ହେଲି ବାଇ
ସୁନା ପାଲଟିଲା ଶତେକ ସପନ ମାଟିର ମନେ ନାହିଁ ।'

କାଳିନ୍ଦୀଚରଣଙ୍କ କବି ବ୍ୟକ୍ତିତ୍ୱର ଗୋଟିଏ ବଡ଼ ଦିଗ ହେଉଛି ଏହି ଶତାୟୁ ଶୈଶବ ଦିନମାନଙ୍କ ପ୍ରତି ବିଶେଷ ସମ୍ମୋହିତ ହେବାର ପ୍ରବଣତା । କବିର ଅତୀତ ପ୍ରୀତି ଓ ପ୍ରକୃତି ପ୍ରୀତି ସର୍ବତ୍ର ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱପରି । ଏକକ ଆବେଗରୁ ଉଭୟ ଅତୀତ ପ୍ରତି ସମ୍ମୋହନ ଓ ପ୍ରକୃତିପ୍ରାଣତା ଉଚ୍ଚାରିତ ହୋଇଥାଏ ।

ନିଜର ମଧୁର ଶୈଶବକୁ ଜୀବନରେ ଜଣେ ଝୁରି ନ ହେଲେ ଜୀବନର ଅନ୍ୟ କୌଣସି ସୂତ୍ରରୁ ସେ ମଧୁରତର ଆସ୍ୱାଦନ ଲାଭ କରିପାରିବ ନାହିଁ । ଶୈଶବର ଦିନ ସବୁ ଯେତେ ନିଃସ୍ୱ ଓ ବେଦନାଭରା ହୋଇଥିଲେ ବି ଶତାୟୁ ଫଗୁଣ ପରି ତାହା ଜଣକୁ ମଧୁବସନ୍ତର ଅନୁଭବ ଆଣିଦିଏ । ଜୀବନର ମଧୁରତର ସମ୍ମୋହନ ହେଉଛି ସତରେ ଶୈଶବ ସ୍ମୃତିରେ ପୁଲକିତ ହେବା । ଜୀବନରେ ତା'ଠାରୁ ଅଧିକ ପ୍ରୀତିପ୍ରଦ ବିଷୟ କିଛି ନାହିଁ ।

ପଲ୍ଲୀର ସକାଳଟିଏ- ଯେଉଁଠି ନିଦରୁ ପକ୍ଷୀଟିଏ ଉଠି ଆଗ ଡାକେ, ସକାଳର ନାଲି ଖରା, ପଖାଳଭାତ, ଗୋବରଲିପା ମାଟି ପିଣ୍ଡା ଆଉ ଯେତେସବୁ ମନଲୋଭା ରୂପରସ

ଗନ୍ଧର ଉଚ୍ଛଳ ପର୍ବପର୍ବାଣି ସେସବୁ ଜଣକୁ ଅନନ୍ତକାଳପାଇଁ ବାନ୍ଧି ରଖେ । ସେହି ମୁଗ୍ଧ ଅନୁଭବକୁ କାଳିନ୍ଦୀଚରଣ ତାଙ୍କ ଉତ୍ତର ଜୀବନରେ ଏକାନ୍ତ ଅବିସ୍ମରଣୀୟ ସ୍ଥାନ କରିଛନ୍ତି -

'ମୋହିଲା ନୟନ କେତେରୂପେ କେତେବର୍ଣ୍ଣେ ସଦା ମୋର

କେତେ ମଧୁବାଣୀ ପରଶି ଯାଇଛି କର୍ଣ୍ଣେ ମଧୁକର ।'

କବି ପାଣି ପବନ ଜଳସ୍ଥଳ ନଦୀ ପାହାଡ଼ ସବୁଥିରେ ସେସବୁର ଜଡ଼ତା ବା ନିଶ୍ଚଳତା ସତ୍ତ୍ୱେ ଗତି ଓ ଜୀବନ ଦେଖିଛନ୍ତି । ପ୍ରକୃତି ତାଙ୍କ ଦେହ ଓ ମନକୁ ଯେପରି ସିକ୍ତ କରି ଦେଇଛି । ଆକାଶରୁ ବାରିପାତରେ ତାଙ୍କ କବିଚିତ୍ତ ପ୍ରବୋଧିତ ହୋଇ ଯାଇଛି । ସେ ଗାଇଛନ୍ତି - 'ମଧୁର ବେଦନା ସମ ବିଶ୍ୱେ ଏହା ବାଜେ / ବହିନିଏ ଆକାଶ ପବନ / ମୋର ସର୍ବ ଅଙ୍ଗ ବେଢ଼ି / ଲାଗେ ଏ ବାରଣ / ଶୁଭେ ଖାଲି ଜୀବନ ଜୀବନ ।'

କାଳିନ୍ଦୀଚରଣଙ୍କ କବିତାର ବିଷୟ ପ୍ରସ୍ଥ ଓ ଭାବଚେତନା ବହୁମୁଖୀ । ସେ ଯେମିତି ରୋମାଣ୍ଟିକ ସେହିପରି ପ୍ରଗତିବାଦୀ । ପୁଣି ଆଧୁନିକତା ପ୍ରତି ତାଙ୍କର ଯଥେଷ୍ଟ ଉନ୍ମୁଖତା ରହିଥିଲା । ସେ ପ୍ରକୃତିପ୍ରାଣ ଓ ଅତୀତ ପ୍ରତି ବିଶେଷଭାବେ ସମ୍ମୋହିତ । ତାଙ୍କ କବିତା କିନ୍ତୁ କମ୍ ବେଶୀରେ ମାନବକୈନ୍ଦ୍ରିକ । ଓଡ଼ିଆ ସାହିତ୍ୟ ଇତିହାସରେ ଉଭୟ ଗଦ୍ୟ ଓ ପଦ୍ୟ ରଚନା କ୍ଷେତ୍ରରେ ତାଙ୍କର ଉଲ୍ଲେଖଯୋଗ୍ୟ କୃତିତ୍ୱ ରହିଛି ।

୧୯୨୦ ରୁ ହିଁ ମୁଖ୍ୟତଃ କବି କାଳିନ୍ଦୀଚରଣଙ୍କ କାବ୍ୟ ଜୀବନର ଆରମ୍ଭ ହୋଇଛି ଏବଂ ତାହା ବହୁଭାବରେ ଉନ୍ମୋଚିତ ହୋଇଛି । ଅନ୍ୟ ସବୁଜ କବିମାନଙ୍କ ପରି କାଳିନ୍ଦୀଙ୍କ କବିତାରେ ଛନ୍ଦ କେଉଁଠି କେଉଁଠି ସାବଲୀଳ ମନେ ନ ହେଲେ ହେଁ ତାଙ୍କ କବିତାର କିଛି ଅଧିକ ତନ୍ମୟତା ଓ ମାନବ ପ୍ରେମ କବିତାକୁ ପଢ଼ିବାରେ ଓ ଉପଲବ୍ଧି କରିବାରେ ସହାୟତା କରେ । କାଳିନ୍ଦୀଙ୍କ କବିତା ବକ୍ତବ୍ୟର ଆନ୍ତରିକତା ଯୋଗୁଁ ଅଧିକ ମନୋଜ୍ଞ । ତାଙ୍କର 'ମନେ ନାହିଁ' ଓ 'ଛୁରୀଟିଏ ଲୋଡ଼ା' କବିତା ଗ୍ରନ୍ଥର କବିତା ଗୁଡ଼ିକରେ ତାଙ୍କ ପଲ୍ଲୀ ଜୀବନ - ପ୍ରୀତି ଓ ପ୍ରକୃତିପ୍ରାଣତା ବିଶେଷ ଭାବେ ରୂପାୟିତ ହୋଇଛି । 'ମନେ ନାହିଁ' କବିତା ଗ୍ରନ୍ଥରେ 'ପାଶୋରି ଦେଲିରେ ଶିମୁଳିପାଳ', 'ମନେ ନାହିଁ', 'ଅମର ଆଶା', 'ଗୋପନ ପୁରେ' ଆଦି କବିତା ତାଙ୍କ ସୃଜନ ଅନୁଭବକୁ ବେଶ୍ ସଫଳତାର ସହିତ ପ୍ରକଟନ କରି ପାରିଛି । କବି ନିଜର ସ୍ମୃତିସ୍ନିଗ୍ଧ ଶୈଶବର ଦିନ ଗୁଡ଼ିକୁ ସ୍ମରଣକୁ ଆଣି ଲେଖିଛନ୍ତି -

'ଭୁଲି ଗଲି ମୋର ଛୋଟ ଘରଟିର ପୁରୁଣାମାଟି
ଦୂର ଦିଗନ୍ତ ଧାନ ବିଲେ କେତେ ଖେଳିଛି ଖେଳ
ମାନି ନାହିଁ ଖରା ବରଷା ପବନ ପିଚ୍ଛିଳା ବାଟ
ଶୈଶବ ପ୍ରିୟ ବନ୍ଧନ ସବୁ ଆସିଲି କାଟି ।
ଦୂର ଗାଆଁ କୋଳେ ବୁଡୁଥିଲା ମୋର ଗୋଧୂଳି ବେଳ
ଶିଶୁ ସାଥୀମେନେ ବସୁଥିଲା କେତେ ସୁଖର ହାଟ,

କେତେ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତକାଳ
ତୋତେ ଚାହିଁ ଆଜି ପାଶୋରି ଦେଲିରେ ଶିମୁଳିପାଳ ।'

- ପାଶୋରି ଦେଲିରେ ଶିମୁଳିପାଳ

ନାରୀଟିଏ ଯେମିତି ଶାଶୂଘରେ ସ୍ୱାମୀ ଓ ପ୍ରଚୁର ଐଶ୍ୱର୍ଯ୍ୟ ଭିତରେ ବି ବାସିଭାତ ମଦରଙ୍ଗା ଶାଗ ଖାଇ ଦିନ ନେଇଥିବା ବାପଘରର ମାର୍ମିକ ମମତାକୁ ଭାଳିହୁଏ - କବିଟିଏ ସେମିତି ଶୈଶବର ସ୍ୱପ୍ନିଳ ଦିନସବୁକୁ ଭାବେ । ସନ୍ତାପିତ ଜୀବନରେ ଗତୁଟିଏ କେବେ ଦୂର ଅତୀତରେ କବିଚିତ୍ତକୁ ବିମୋହିତ କରିଥିଲା । ଆଦ୍ୟ ଯୌବନରେ କେଉଁ ନଈଘାଟରେ କବିର ଆଖି ମୋହିନୀ କନ୍ୟାକୁ ଦେଖିଥିଲା ଉତ୍ତର କାଳରେ ସେହି ବିମୁଗ୍ଧ ସ୍ମୃତି ହିଁ ତା'ର କବିତାର ବିଷୟ ହୋଇଛି । 'ମନେ ନାହିଁ' କବିତା ଗ୍ରନ୍ଥଟି ସେହି ଅପାଶୋରା ସ୍ମୃତିର ଅଭିଲିପି ଯେପରି । କବି ଲେଖିଛନ୍ତି -

'ଉଚ୍ଛୁଳିଲା ଗୀତ ବରଷା ବାଆର ପୁଲକେ ଥରି ଥରି
ବକ୍ର ବିଜୁଳି ଦୂରଗଗନର ମୂଳକେ ଗଲା ମରି
ଅନ୍ତରେ କେତେ କାରଣ ବିହୀନ ବାସନା ଦେଲି ଲେଖି
ଅର୍ଥ ବିହୀନ କେତେ ସୁଖ କେତେ ଯାତନା ହେଲା ସେ କି
କେତେ ସୁକୁମାର ପରଶ ଜାଗିଲା ମରମେ ହରଷାଇ
କେତେ ଫଗୁଣର ଅବିର ଲାଗିଲା ଚରମେ ମନେ ନାହିଁ ।'

କବି ତାଙ୍କ ଜୀବନରେ କେବଳ ବେଶୀ ଝୁରି ହୋଇଛନ୍ତି ଗୋଟିଏ ସୁନ୍ଦର ସୁମଧୁର ଶୈଶବକୁ । ଶୈଶବ ହିଁ ଯଥାର୍ଥରେ ମଣିଷର ଏକ ବଡ଼ ସମ୍ପଦ । କବି ଦୂର ପ୍ରାନ୍ତୀୟ ପଲ୍ଲୀରେ ଯେଉଁ ଅଖ୍ୟାତ ଚାଳଘର ଖଣ୍ଡିକୁ ତାଙ୍କ ଉତ୍ତର ଜୀବନରେ ଅତି ଶ୍ରଦ୍ଧାର ସହିତ ସ୍ମରଣ କରିଛନ୍ତି, ତାହା ତାଙ୍କ ନିବିଡ଼ ଅତୀତ ପ୍ରୀତିର ନିଦର୍ଶନ । ନିଜ ଜନ୍ମପୀଠ ଗାଁର ସେ ଚାଳଘର- ଯେଉଁଠି କବି ଜୀବନର ଆଦ୍ୟ ପ୍ରେମ ବାଢ଼ିଛନ୍ତି ତାକୁ ବିସ୍ମରି ଯାଇପାରି ନାହାନ୍ତି । କାଳିନ୍ଦୀଚରଣଙ୍କ ଏହି 'ଚାଳର ଘର' କବିତାଟି ତାଙ୍କର ପଲ୍ଲୀ ପ୍ରୀତି ଓ ଶୈଶବ ଭାବନାର ଏକ ସାର୍ଥକ ନିଦର୍ଶନ —

'ଚାଳର ଘରେ ଜନ୍ମ ମୋର / ଚାଳର ଘରେ ଥାଏଁ
ଚାଳର ଘରେ ପିଅଇ ପାଣି / ଚାଳର ଘରେ ଖାଏଁ
ପରାଣ ଦିଅଁ ହୃଦୟେ ମୋର / ନୂତନ କରି ବଜାଅ ସ୍ୱର
ଜୀବନ ବ୍ୟଥା ପରାଣେ ସ୍ୱର / ନୂତନ କରି ଗାଏଁ
ଚାଳର ଘରେ ଆଦ୍ୟ ପ୍ରେମ / ଦେଇଛି ମୋର ବାଢ଼ି

ଚାଳର ମୋର କୁଟୀର ଗୋଟି / ତୁଚ୍ଛକରେ ଭୁବନ କୋଟି
ଚାଳର ଘରେ ପଡ଼ିଛି ଲୋଟି / କେତେ ନୟନ ବାରି ।'

- 'ଛୁରୀଟିଏ ଲୋଡ଼ା' - 'ଚାଳର ଘର'

ଏହି 'ଛୁରୀଟିଏ ଲୋଡ଼ା' କବିତା ଗ୍ରନ୍ଥ ହେଉ କି 'ମହାଦୀପ', 'ମନେ ନାହିଁ', 'କ୍ଷଣିକ ସତ୍ୟ' ଆଦି କବିତା ଗ୍ରନ୍ଥ ହେଉ ସବୁ କବିତାର କାବ୍ୟ ସ୍ୱରରେ ଆମେ କବିଙ୍କ ସ୍ୱଜୀବନାନୁଭୂତିକୁ ହିଁ ଉପଲବ୍ଧି କରୁଁ । କବି ନିଜେ 'ଛୁରୀଟିଏ ଲୋଡ଼ା'ର ଆଦ୍ୟ କଥନୀରେ କହିଛନ୍ତି - 'ଯେକୌଣସି ଲେଖକର ରଚନା ତାହାର ଜୀବନର ବ୍ୟାଖ୍ୟା ଛଡ଼ା ଆଉ କିଛି ହୋଇ ନପାରେ ।' ଏହି କବିତାଗୁଡ଼ିକ ପୂର୍ବରୁ 'ଉତ୍କଳ ସାହିତ୍ୟ', 'ନବଭାରତ', 'ସହକାର', 'ଯୁଗବୀଣା', 'ମୁକ୍ତି ଯୁଦ୍ଧ' ଆଦି ଓଡ଼ିଆ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । 'ଛୁରୀଟିଏ ଲୋଡ଼ା' କବିତା ଗ୍ରନ୍ଥରେ 'ଛୁରୀଟିଏ ଲୋଡ଼ା', 'ମୋ ବାଣୀ', 'ମୁକୁଳି ପଡ଼ଗୋ', 'ଚାଳର ଘର', 'ବର୍ଷା ନାୟିକା', 'କୁହୁପ୍ରାସ', 'ପୌଷମଳୟ', 'ଆଗାମୀ', 'ସୁଦୂର ଗାନ', 'ଚିତ୍ରୋତ୍ପଳା', 'ବ୍ୟଥାର ସାଧନ', 'ପ୍ରାଚୀନା' ଆଦି କବିତା ତାଙ୍କ ଅନ୍ତରାତ୍ମାକୁ ନାନାମତେ ପ୍ରକଟନ କରିଛି ।

ଜଣେ ମହାନ୍ କବି କହିଥିଲେ ମଣିଷକୁ ତା'ର ହଜାରେ ଅମାନବିକ ଆଚରଣ ସତ୍ତ୍ୱେ ବିଶ୍ୱାସ କରିବା ଭିନ୍ନ ବିକଳ୍ପ ମୋ ନିକଟରେ ଆଉ କିଛି ନାହିଁ । ଦେବତାକୁ ନୁହେଁ ସେହି ମଣିଷକୁ ସ୍ୱୀକାର କରିବା ଆଉ ତା'କୁ ଶ୍ରଦ୍ଧା କରିବା ହିଁ ସାର୍ଥକ ଆରାଧନା । କାଳିନ୍ଦୀଚରଣଙ୍କ 'ଛୁରୀଟିଏ ଲୋଡ଼ା' କବିତାଟିର ଭାବପିଣ୍ଡ ଏକାନ୍ତ ମାନବତାବାଦୀ ।

କାଳିନ୍ଦୀଚରଣ ନାନା ଭାବରେ ମଣିଷକୁ ତାଙ୍କ କବି କଳ୍ପନାର କେନ୍ଦ୍ର କରିଛନ୍ତି । ପୀଡ଼ିତ ମଣିଷ ପ୍ରତି ତାଙ୍କର ଅଶେଷ ଶ୍ରଦ୍ଧା ଓ ସମର୍ଥନ । ତାଙ୍କର ଅନ୍ୱେଷଣ ମଣିଷର ଶ୍ରଦ୍ଧା ଓ ସାନିଧ୍ୟ ପାଇଁ ।

'ନିବିଡ଼ ନିରାଶେ ଦେବତା ପାଶରୁ ଫେରି
ଖୋଜିଲି କାହାର ବଜାଇବି ତେବେ ଭେରୀ ?
ଦୁନିଆ ଭିତରେ ସାଉଁଟିଲି କାହିଁ କେବା
ମଜିବି କାହିଁରେ ପୂଜିବି କରିବି ସେବା
ସୃଜିବି ପୁଲକ କାହାର ପୀରତି ଗାଇ
ଜିଇଁବାକୁ ଏଥିମାତ୍ର ଦିନକ ପାଇଁ ।'

କାଳିନ୍ଦୀଚରଣ ସବୁଜ କବି ନିଶ୍ଚୟ । ଯୌବନର ବନ୍ଦନା ଗୀତି ଗାଇଛନ୍ତି । ପ୍ରଣୟ ମଧୁବର୍ଷଣର ଅମୃତଲଗ୍ନ ସବୁକୁ ସରସ ପଦ ଯୋଜନା ରୀତିରେ ଚିତ୍ରଣ କରିଛନ୍ତି । ତାଙ୍କ କବିତ୍ୱର ଅନ୍ତସ୍ଥଳରେ କିନ୍ତୁ ଦଳିତ ପୀଡ଼ିତଙ୍କ ପାଇଁ ସ୍ନେହ ଓ ସାନ୍ତ୍ୱନାର ଝର ପ୍ରବାହିତ ।

କାଳିନ୍ଦୀଚରଣ ଯଥାର୍ଥରେ ଲେଖିଛନ୍ତି - 'ମଣିଷ, ମଣିଷ ଶୁଭିଲା ଦୂରରୁ ତାକ/ଦୁନିଆର ଯେତେ ଦଳିତ ପୀଡ଼ିତ ଯାକ/ସ୍ପନ୍ଦନ ସେହି ପୁଲକ ପରାସ ରେଖା/ବନ୍ଧୁର ପଥେ ବନ୍ଧୁ ସେ ମୋର ଏକା ।'

କବି କାଳିନ୍ଦୀଚରଣଙ୍କ କବିତାର ବ୍ୟକ୍ତିକୈନ୍ଦ୍ରିକତା ତାଙ୍କ ପୂର୍ବ ସତ୍ୟବାଦୀ ବା ରାଧାନାଥ ଯୁଗର ବ୍ୟକ୍ତିକୈନ୍ଦ୍ରିକତାଠାରୁ ଅଲଗା ପ୍ରକାରର ଅବଶ୍ୟ । ପୁଣି ତାଙ୍କର ଶୈଶବ ଭାବନା ପଲ୍ଲୀ ଜୀବନ ଚିତ୍ର ତଥା ବର୍ଷାର ଛବି ନନ୍ଦକିଶୋର ବଳଙ୍କଠାରୁ ଅଲଗା ପ୍ରକାରର । ଉଲ୍ଲିଖିତ କବିତାଗୁଡ଼ିକର ସ୍ୱକୀୟତାକୁ ଚିହ୍ନଟ କରିପାରିଲେ କାଳିନ୍ଦୀଚରଣଙ୍କ ସମ୍ବେଦନଶୀଳ କବି ବ୍ୟକ୍ତିତ୍ୱକୁ ଅଧିକ ଉପଲବ୍ଧି କରିହେବ । ତାଙ୍କର ପ୍ରଗତିବାଦୀ ତଥା ମାନବତାବାଦୀ କେତେକ କବିତା ଅଧିକ ବକ୍ତବ୍ୟ ପ୍ରଧାନ ହୋଇଥିଲେ ହେଁ, 'ମନେ ନାହିଁ', 'କ୍ଷଣିକ ସତ୍ୟ' ଆଦି କବିତାଗ୍ରନ୍ଥର କେତେକ କବିତା ଅଧିକ ଭାବପ୍ରଧାନ । ପୂର୍ବରୁ ସୂଚିତ ହୋଇଛି ଯେ, କାଳିନ୍ଦୀଚରଣଙ୍କ ଅଧିକାଂଶ କବିତା ମାନବକେନ୍ଦ୍ରିକ । ମଣିଷର ସୁଖ, ଦୁଃଖ, ମାନ, ଅପମାନ ହିଁ ତାଙ୍କ କବିତାରେ ପ୍ରତୀକିତ ହୋଇଛି । ଏପରିକି କେତେକ ପ୍ରକୃତିବର୍ଣ୍ଣନାମୂଳକ କବିତାରେ ମଧ୍ୟ କବି ମଣିଷ ଜୀବନକୁ ଚିତ୍ରଣ କରିଛନ୍ତି । ଏ ପ୍ରସଙ୍ଗରେ ଉଇଲିୟମ ବ୍ଲେକ (William Blake) ଙ୍କ, 'Where Man is not nature is barren'. (ଯେଉଁଠି ମଣିଷ ନାହିଁ ସେଠି ପ୍ରକୃତି ବନ୍ଧ୍ୟା) କବିତାଂଶ ସ୍ମରଣକୁ ଆସେ । କାଳିନ୍ଦୀ ମଣିଷର ବ୍ୟଥାତୁର ବିକ୍ଷତ ଜୀବନ, ତା'ର ଆଶା ଆନନ୍ଦ ଓ ମୁକ୍ତି - ପ୍ରବଣତାକୁ ଆତ୍ମାର ସମର୍ଥନ ଦେଇ ଲେଖିଛନ୍ତି ।

କାଳିନ୍ଦୀଙ୍କ କବିତାରେ କିଛି ନୈରାଶ୍ୟମୂଳକ ଭାବଧାରା ଅବଶ୍ୟ ପରିଲକ୍ଷିତ ହୁଏ ; ମାତ୍ର ତାହା ତାଙ୍କ କାବ୍ୟସ୍ୱରର ଏକ ସ୍ଥିରତର ମୁଦ୍ରା ନୁହେଁ । ତାଙ୍କ କବିତାର ନାରୀଭାବ ଓ ପ୍ରଣୟ ଚେତନା ତାଙ୍କ ସାମଗ୍ରିକ କବିତାଦର୍ଶର ଅନ୍ୟ ଏକ ପ୍ରମୁଖ ଦିଗ । ସବୁଜମାନେ ଏହି ପ୍ରଣୟଚେତନାକୁ ଅଧିକ ମାନ୍ୟତା ଦେଇ ଲେଖିଛନ୍ତି । ଯୌବନ ବ୍ୟତିରେକ ଜୀବନ ଆଉ ସ୍ୱାଦ୍ୟ ନୁହେଁ ବୋଲି ସବୁଜମାନେ ରୋକ୍‌ଠୋକ୍ ଭାବେ କହିଛନ୍ତି । ଅନ୍ୟ ସବୁଜ ବନ୍ଧୁମାନଙ୍କ ପରି କାଳିନ୍ଦୀ ମଧ୍ୟ ପ୍ରେମର ପୂଜା କରିଛନ୍ତି ଓ ଯୌବନର ବନ୍ଦନାଗୀତି ଗାଇଛନ୍ତି । କାଳିନ୍ଦୀଙ୍କ 'ପ୍ରାଚୀନ' କବିତାଟି ତାଙ୍କର ବାସ୍ତବବାଦୀ ଦୃଷ୍ଟିଭଙ୍ଗୀର ନିଦର୍ଶନ । ସେ ଲେଖିଛନ୍ତି -

'ପୀରତି ନାମରେ କିମ୍ପାଇ ଭୟ କହ ଗୋ ଆଜ
ସେ ନୁହେଁ କୁହୁକ ଆକାଶବାଣୀ ସେ ନୁହେଁ ଲାଜ
ଯୁବକ ଯୁବତୀ ଧରମ ସେ ତ ବୟସ ଦାବି
ଗୋପନୀୟ ତେବେ କି ଅଛି ତେବେ କହତ ଭାବି ।'

- ପ୍ରାଚୀନ - ଛୁରୀଟିଏ ଲୋଡ଼ା

କବି ଅତୀନ୍ଦ୍ରିୟ ଚେତନାର କବିମାନଙ୍କ ପରି ଦେହାତୀତ ପ୍ରେମ (Platonic Love) କଥା କହିନାହାନ୍ତି କି ପ୍ରେମ ପ୍ରଣୟ ଚେତନାକୁ ସେ ରହସ୍ୟ ବିଜଡ଼ିତ କରିଦେଇ ନାହାନ୍ତି । କବି କାଳିନ୍ଦୀଚରଣ ତେଣୁ ଗାଇଛନ୍ତି -

'ପୀରତି କୀରତି ବଖାଣି ବସିଲେ ପଥର ତରଳି ବହିବ ଜଳ
ସବୁ ପୀରତିର ମୂଳରେ ଯା ଅଛି ନ କହିବା ତାହା ସବୁଠୁ ଭଲ ।'

ପ୍ରେମ ଜଗତର ଏକ ଖେଳ । ତାହା ଅସ୍ୱର୍ଗୀୟ ନୁହେଁ । ପ୍ରଣୟ ପ୍ରକୃତିର ପୂଜା । ପ୍ରେମରେ ପାପ ନାହିଁ କି କପଟାଚାରର ପ୍ରଶ୍ନ ନାହିଁ । ପ୍ରେମ ମଣିଷ ଜୀବନର ସହଜ ପ୍ରବୃତ୍ତି । ସେଥିରେ ନୀତି ନାମରେ ଧର୍ମ ନାମରେ, ଶୀଳତା ନାମରେ ବକ୍ରତା ଆଦୌ ସ୍ପୃହଣୀୟ ନୁହେଁ । ତାଙ୍କ 'ପ୍ରାଚୀନ' କବିତାରେ କାଳିନ୍ଦୀଚରଣ ତେଣୁ ଲେଖିଛନ୍ତି - 'ଜଗତେ ଜାଗିଛି ଜୀବନ ଖେଳ / ଦେଖଲୋ ନାରୀ / କେତେ କାଳ ହୀନ ବେପାରେ ଥିବୁ / ନୟନ ଠାରି । କର ପରକାଶ ଜୀବନେ ତୋର ସହଜ ଆଶା / ଶଇଶବ କାଳୁଁ ଶିଖିଚୁ ଯେଉଁ ସହଜ ଭାଷା ।

କାଳିନ୍ଦୀଚରଣ ବୈକୁଣ୍ଠନାଥଙ୍କ ପରି ପ୍ରେମର ଅନୁଭବକୁ ଦର୍ଶନାୟିତ କରିଛନ୍ତି । ସୃଷ୍ଟିଶୀଳ ପ୍ରେମାନୁଭୂତି ପ୍ରେମକୁ ଗୌରବାନ୍ୱିତ କରେ । କାଳିନ୍ଦୀଙ୍କ 'ସୃଜନ ବ୍ୟଥା' କବିତାର ନିମ୍ନୋକ୍ତ ଧାଡ଼ିସବୁ ତାଙ୍କ ସମୁନ୍ନତ ଭାବନାର ନିଦର୍ଶନ ।

ମାନବ ନୟନେ ଯାହା ଶୂନ୍ୟ ବୋଲି ହୁଅଇ ପ୍ରତୀତି
ସୂକ୍ଷ୍ମତମ ସେହି ଶୂନ୍ୟେ ପୂରି ଅଛି ଜୀବନର ଗୀତି
କୋଟି ଚେତନାର ଅଣୁ ପରମାଣୁ ରମେ,
ରୂପେ ରୂପେ ଏ ସୃଷ୍ଟି ବିଳସେ । - ସୃଜନ ବ୍ୟଥା

ତାଙ୍କର 'କ୍ଷଣିକ ସତ୍ୟ' କବିତା ଗ୍ରନ୍ଥ ଯାହା ଅନ୍ୟତମ ପ୍ରମୁଖ ସବୁଜ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହୋଇଛି; ସେଥିରେ ମଧ୍ୟ ସେଇ ଶୈଶବର ଦିନ ସବୁକୁ କବି ତାଙ୍କର ଉତ୍ତର ଜୀବନରେ ଭାଳି ହୋଇଛନ୍ତି । ସେ ଜୀବନ ବିଷୟରେ ତାଙ୍କ ଶୈଶବରେ ଯେପରି ସବୁ ମଣିଷଙ୍କ ପରି ଅଶେଷ ସ୍ୱପ୍ନ ଦେଖିଛନ୍ତି ; ଅଥଚ ଜୀବନରେ ତା' ସତ ହୋଇନି । ସବୁ ମଣିଷଙ୍କ ଜୀବନ ବୋଧେ ଏହିପରି । ଶୈଶବର ସ୍ୱପ୍ନ ହିଁ ସେ ଜୀବନକୁ ଏତେ ମଧୁମୟ ଓ ରହସ୍ୟମୟ କରିଥାଏ । ଆଗରେ ପଡ଼ିଥିବା ଜୀବନକୁ ସେ କଳ୍ପନା କରେ । ମଣିଷ ଜୀବନର ଉନ୍ମେଷ- ଉତ୍ତରଣକୁ ମଧ୍ୟ କବି ଚିତ୍ରଣ କରିଛନ୍ତି ଓ ସେ ଚିତ୍ରଣରେ ନିଜ ଜୀବନାନୁଭୂତିକୁ ଯଥାସମ୍ଭବ ମିଶାଇଛନ୍ତି । ଅନ୍ୟ ସବୁ କବିତା ପରି 'କ୍ଷଣିକ ସତ୍ୟ' କବିତା ଗ୍ରନ୍ଥର ଅଧିକାଂଶ କବିତା ତାଙ୍କ କଳ୍ପନାବିଳାସ ରୋମାଣ୍ଟିକ ଅନୁଭବର ପରିଚୟ ଦିଏ । କବି ବହୁଭାବରେ ମଣିଷର ନୃତାତ୍ତ୍ୱିକ ଭାବାବେଗକୁ ହିଁ ମୁଖ୍ୟତଃ ରୂପାୟିତ କରିଛନ୍ତି ।

ମଣିଷ ଜୀବନର ସ୍ୱପ୍ନ ଓ ତା' ଯୌବନର ପ୍ରଣୟ - ଗୀତିକୁ କେବଳ ନୁହେଁ, ତା'ର ବ୍ୟଥାତୁର ସଂଗ୍ରାମଶୀଳ ଜୀବନକୁ ମଧ୍ୟ କବି ତାଙ୍କ କବିତାରେ ସଫଳତାର ସହିତ ଚିତ୍ରଣ କରିଛନ୍ତି । ସେ ବିପୁଳ ଜୀବନ ପାଇଁ ପୁଣି ଛନ୍ଦ ଯୋଡ଼ିଛନ୍ତି । ରବୀନ୍ଦ୍ରନାଥ ଯେପରି ଗାଇଛନ୍ତି -

'ଆମାର ଜୀବନ କ୍ରନ୍ଦନ କରେ ମାନବ ଜୀବନେ ମିଶିତେ
ନିଖିଳର ସାଥେ ମହା ରାଜପଥେ ଚଳିତ ଦିବସେ ନିଶିତେ ।'

ପୃଥିବୀର ସବୁ କବି ମଣିଷର କଥା ହିଁ ଆତ୍ମା ଅନ୍ତର ଦେଇ ଲେଖିଥାନ୍ତି । ମଣିଷର କଥା ଲେଖାଥିବା କବିତା ହିଁ କାଳଗର୍ଭରେ ବଞ୍ଚିରହେ । କାଳିନ୍ଦୀଚରଣଙ୍କ ପ୍ରତି ଯେଉଁ ଅଧିକ ସ୍ୱୀକୃତି ଓ ମାନ୍ୟତା ଅନେକଙ୍କର ରହିଛି ତାହା ତାଙ୍କ କବିତାର ମାନବପ୍ରୀତି ପାଇଁ ।

କବିତା ଏକ ଶିଳ୍ପାୟନ; ଯେଉଁଥିରେ କବିର ସୃଜନ ସ୍ୱପ୍ନ ଉଦ୍‌ଭାସିତ ହୋଇଥାଏ ।

'ଆଗାମୀ' କବିତାଟି କାଳିନ୍ଦୀ ଚରଣଙ୍କ ସାରସ୍ୱତବାଣୀର ଏକ ଚମତ୍କାର ଇସ୍ତାହାର । ଜଣେ ମହାନ୍ କବି କେବଳ ସବୁ ମଣିଷଙ୍କ ସୁନ୍ଦର ଜୀବନକୁ ସ୍ୱପ୍ନ ଦେଖିପାରେ । ସେ ତାଙ୍କ କବିତା ସଂପର୍କରେ 'ଆଗାମୀ'ରେ ଯେଉଁ ଇସ୍ତାହାର ବାଢ଼ିଛନ୍ତି ତାହା ସତରେ ଅନୁପମ ଓ ପାଠକର ଅନ୍ତରକୁ ତାହା ଉଲ୍ଲସିତ କରିଦିଏ ।

'କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଖରେ ହେଲେ ଘର ।
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ ।
ଦୁଇଟା ଲୁଗାଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ ।
ବେକାର ରହିବାକୁ ନାହିଁଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେହି ସମାଜର କବିତା ବସେ ରଚି । -'ଆଗାମୀ' - 'ଛୁରୀଟିଏ ଲୋଡ଼ା'

କବି କାଳିନ୍ଦୀଚରଣ ମଣିଷର ସୁନ୍ଦର ଜୀବନକୁ ସବୁମତେ ସ୍ୱପ୍ନ ଦେଖିଛନ୍ତି । ସତ କବିଟିଏ ସତରେ ସବୁକାଳରେ ସେହି ସ୍ୱପ୍ନ ଦେଖିଥାଏ । ସବୁ କବିଙ୍କ ସୃଜନ ଅନୁଭବର ଏ ଏକ ବଡ଼ ପ୍ରସ୍ଥ । ଜନମଙ୍ଗଳକର ଭାବନା ଯେ କୌଣସି ସୁମହତ ସାହିତ୍ୟ କର୍ମର ଏକ ବଡ଼ ଦିଗ ବା ଉପାଦାନ । ମଣିଷ ଅନ୍ତରକୁ ସେଇ କବିତା ସ୍ପର୍ଶ କରିପାରେ ତା'ର ଅନ୍ତରକୁ ଉଦ୍‌ବେଳିତ କରିପାରେ ଯେଉଁ କବିତାରେ କବିର ଅନ୍ୟ ସହିତ ସଂପର୍କବୋଧ ବଡ଼ ସଶ୍ରଦ୍ଧ ଓ ନିବିଡ଼ ।

ମଣିଷ ଯେଉଁଠି ହଜାରେ ବାଧାବନ୍ଧନ ଓ ଦୁଃସ୍ଥିତି ସତ୍ତ୍ୱେ ଆଗକୁ ଚାଲିଛି - ସେଇଠି ହିଁ ତା ଜୀବନ ସୁନ୍ଦର ଓ ସେହି ସୁନ୍ଦର ଜୀବନର ଛବିକୁ ହିଁ କବି ମନ ଦେଇ ଆଙ୍କିଥାଏ ।

କାଳିନ୍ଦୀଚରଣଙ୍କର ସେହି 'ଆଗାମୀ' କବିତାର ସେଇ କେତୋଟି ଧାଡ଼ି ସେହି ଅନୁଭବର ଚମତ୍କାର ପ୍ରକାଶ -

'ଯୋଡ଼ଇ ଛନ୍ଦ ମୁଁ ବିପୁଳ ଜୀବନର
ଖେଳଇ ନିତି ଯହିଁ ବିଶ୍ୱ ଚରାଚର ।

ଚାଲିଛି ମରଣକୁ କରି ଯେ ଉପହାସ
ବେଦନା ଶୋକତାପେ ପାରିଛି କରି ଦାସ ।

ଉଠଇ ନାଚି ଯହିଁ ଊର୍ମି ହରଷର
ଚାଲିଛି ନଗଣି ଯେ କିଏ ବା ନିଜ ପର ।

ବିରାଟ ସେ ଜୀବନେ ସବୁରି ଅଛି ମୂଳ
ବୁଝଇ ନର ତହିଁ ପହିଲେ ନିଜ ଭୁଲ ।

ପହିଲେ ପର ଦୁଃଖ ପାରଇ ଅନୁଭବୀ
ଆଗାମୀ କାଳର ମୁଁ କବିତା ରଚେ କବି ।'

ଜଣେ କବି ପ୍ରକୃତରେ ବିଶାଳ ଜୀବନକୁ ହିଁ ଦେଖୁଥାଏ ଓ ବିଶାଳ ବିଶ୍ୱକୁ ତା କବିତାର ଜଗତ କରେ । ସେ ଜଗତରେ ମଣିଷକୁ କେବେ ପର ଆପଣା କରି ଦେଖେ ନାହିଁ । ସବୁ ମଣିଷକୁ ଭଲପାଇବା କବି ଅନ୍ତରର ଧର୍ମ, ତା ଆତ୍ମାର ଅଭିଳାଷ । କବି କେବେ ଆପଣା ଜୀବନ ପାଇଁ ସୁଖ କାହାରିକୁ ମାଗେ ନାହିଁ ; ମାଗେ କୋଟି ଜୀବନ ପାଇଁ । ଯେପରି ଜଣେ ସନ୍ଥକବି ଲେଖିଛନ୍ତି -

'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ'
(ଭୀମଭୋଇ - 'ସ୍ତୁତି ଚିନ୍ତାମଣି')

ବିଶିଷ୍ଟ ସ୍ଥିତିବାଦୀ ଦାର୍ଶନିକ ସୋରେନ କିରକେଗାର୍ଡ଼ ଯେ ନିଜକୁ ଜଣେ କବି ବୋଲି ପରିଚିତ କରିବା ପାଇଁ ସମଗ୍ର ଜୀବନ ଚେଷ୍ଟା କରିଛନ୍ତି । ସେ ପର ଆପଣା ଭେଦ ଦେଖି ନାହାନ୍ତି ; ବରଂ ଜଗତକୁ ତ୍ରାଣ କରିବା ପାଇଁ ଘୋଷଣା କରିଛନ୍ତି -

Be objective for yourself and subjective for others' (ନିଜପ୍ରତି ଅନାସକ୍ତ ଓ ଅନ୍ୟପ୍ରତି ଆସକ୍ତ ହୁଅ)

'ଆଗାମୀ' କବିତାଟି କେତେକାଂଶରେ ସାମ୍ୟବାଦୀ ଚେତନା ଦ୍ୱାରା ପ୍ରଭାବିତ ବୋଲି କେତେକ ସାହିତ୍ୟ ଛାତ୍ର ଓ ସମାଲୋଚକ ମନେ କରନ୍ତି । ଏହି ଆଗାମୀ କବିତା ପରି ତାଙ୍କର ଆଉ କେତେଗୁଡ଼ିଏ କବିତା ଅଛି, ଯାହା ମଣିଷର ବ୍ୟଥାତୁର ଜୀବନକୁ ହିଁ ଲେଖିଛି ଓ ଏହି ମର୍ତ୍ତ୍ୟରେ ମଣିଷକୁ ହିଁ ସ୍ୱୀକାର କରିଛି । କାଳିନ୍ଦୀଚରଣ ଇଉରୋପୀୟ ରୋମାଣ୍ଟିକ କବିମାନଙ୍କ ପରି ନିଜର ସ୍ୱପ୍ନ ଓ କଳ୍ପନାକୁ ବହୁ ଦୂରକୁ ପ୍ରସାରୀ ଦେଇଛନ୍ତି ଓ କେତୋଟି କବିତାର କାବ୍ୟସ୍ୱର ତେଣୁ ରହସ୍ୟବାଦୀ ହୋଇଛି । ତାଙ୍କ 'ନୀରବ ଆହ୍ୱାନ' କବିତା ଏହି ପର୍ଯ୍ୟାୟର ଯେଉଁଠି ସେ ଲେଖିଛନ୍ତି 'ସବୁ କୋଳାହଳ ଭେଦି ଶୁଣିବି ମୁଁ/ଶବ୍ଦହୀନ ନୀରବତା ଡାକ ।'

ତାଙ୍କର 'ଆଶ୍ଳେଷ ସ୍ୱର୍ଗ', 'ପ୍ରସାଧନ' ତଥା 'ପଥର ପ୍ରେମିକ' କବିତା ସବୁ ଏମିତି ଭାବାତ୍ମକ । ହୁଏତ ଏହିପରି କେତେକ କବିତା ଉପରେ ରବୀନ୍ଦ୍ରଙ୍କ ପ୍ରଭାବକୁ କଳ୍ପନା କରାଯାଇପାରେ ।

ମନ ଓ ଚେତନା ଭୂମିରେ ରବୀନ୍ଦ୍ରନାଥ ଯେଉଁ ୟୁରୋପୀୟ ନବଜାଗରଣ ଦ୍ୱାରା ପ୍ରଭାବିତ ହୋଇଥିଲେ, ସେଇ ପ୍ରଭାବର ସାଦୃଶ୍ୟ କେତେକାଂଶରେ କାଳିନ୍ଦୀଙ୍କ କବିତାରେ ଲକ୍ଷ୍ୟ କରାଯାଇପାରେ । କାଳିନ୍ଦୀଙ୍କ କବିତା ଯେପରି ସଫଳ ଓ ଅତି ମାତ୍ରାରେ କାବ୍ୟାତ୍ମକ ସେହିପରି ମାନବକୈନ୍ଦ୍ରିକ । କାଳିନ୍ଦୀଙ୍କ କବିତା ସେତେବେଳେ ଏତେ ସଫଳ ଓ ଲୋକପ୍ରିୟ ହୋଇ ପାରୁଥିଲା ଯେ ଅନ୍ନଦାଶଙ୍କର ତାଙ୍କୁ ଅତିକ୍ରମ କରିଯାଇ ପାରିବେ ନାହିଁ ବୋଲି ଭାବି ସବୁଜ ଗୋଷ୍ଠୀର ଓଡ଼ିଆ ସାହିତ୍ୟ ସୃଷ୍ଟି ପରମ୍ପରାକୁ ଛାଡ଼ି ଶେଷରେ ବଙ୍ଗଳାରେ ଲେଖାଲେଖି କଲେ ।

କାଳିନ୍ଦୀଚରଣ ତାଙ୍କ କବିତାରେ ନିଜ ଜୀବନକଥା ଲେଖିବାକୁ କେଉଁଠି କୁଣ୍ଠିତ ହୋଇ ନାହାନ୍ତି । ବିଶ୍ୱର ବିଶିଷ୍ଟ ରୋମାଣ୍ଟିକ କବିମାନେ ତାହା କରିଛନ୍ତି । ତାଙ୍କ 'ଛୁରାଟିଏ ଲୋଡ଼ା' କବିତା ଗ୍ରନ୍ଥର ମୁଖବନ୍ଧରେ କାଳିନ୍ଦୀଚରଣ ଲେଖିଛନ୍ତି 'ଯେକୌଣସି ଲେଖକର ରଚନା ତାହାର ଜୀବନର ବ୍ୟାଖ୍ୟା ଛଡ଼ା ଆଉ ଅନ୍ୟ କିଛି ହୋଇନପାରେ ।'

କାଳିନ୍ଦୀଚରଣ ସବୁଜ କବିମାନଙ୍କ ମଧ୍ୟରେ ଏପରି ଜଣେ କବି ଯେ ତାଙ୍କ କବିତାରେ ନିଜକୁ ଅଧିକ ବ୍ୟକ୍ତ କରିପାରିଛନ୍ତି । କାଳିନ୍ଦୀଚରଣଙ୍କ ଦର୍ଶନ, ସାମାଜିକ ତଥା ରାଜନୀତିକ ଆଦର୍ଶ ଓ ଜୀବନ ଦୃଷ୍ଟି ତାଙ୍କ କବିତାରୁ ସହଜରେ ବାରି ହୋଇ ପଡ଼େ । ତାଙ୍କର ପ୍ରକୃତି ତଥା ଗ୍ରାମ୍ୟ ଜୀବନ ପ୍ରୀତି ସହିତ ଶୈଶବ ପ୍ରତି ସମ୍ମୋହନ ତାଙ୍କ କବିତାମାନଙ୍କରେ ନାନା ଭାବରେ ପ୍ରତୀକିତ ହୋଇଛି । 'ମନେ ନାହିଁ' କବିତା ଗ୍ରନ୍ଥଟି ଅଧିକାଂଶରେ ତାଙ୍କ ଶୈଶବ ପ୍ରୀତିର ସ୍ମାରକୀ । ଅତୀତ ପ୍ରୀତି ତାଙ୍କ କବିତ୍ୱର ଏକ ବଡ଼ ଅଂଶ; ଯାହାର ରୂପାୟନରେ ସେ ଅଧିକ ଛଳଛଳ ଓ ମରମୀ ହୋଇ ପଡ଼ିଛନ୍ତି । ସେ ତାଙ୍କ ଅତୀତକୁ ମଧୁର ସ୍ମୃତିର ବିଷୟ ବୋଲି ବର୍ଣ୍ଣନା କରିଛନ୍ତି । ଦୂର ଗାଁର ଗୋଧୂଳି, ଶିଶୁସାଥୀମାନଙ୍କ ସହିତ କ୍ରୀଡ଼ା କୌତୁକ, ନିଜ ଗାଁର ପରିଚିତ ମାଟି, ଗାଁର ନୀଳ ନିବିଡ଼ ଆକାଶ ସବୁକୁ କବି ସ୍ମରଣକୁ ଆଣିଛନ୍ତି ।

ମଧୁମାସ ବସନ୍ତ ତାଙ୍କ କବିଚିତ୍ତକୁ ପ୍ରବୋଧିତ କରିଦେଇଛି । କାଳିନ୍ଦୀଚରଣ ମଧୁମାସ ବସନ୍ତ ଆଗମନରେ ଲେଖିଛନ୍ତି -

'ପଥେ ପଥେ ରୂପେ ରୂପେ
    ରୂପର ବିଳାସ,
ଫେରି ଆସେ ବାରବାର
    ସେହି ମଧୁମାସ ।
ଯୁଗେ ଯୁଗେ କେତେ କଥା
    ଆସିଛି ସେ କହି,
କେତେ ମୁଖେ ନବ ନବ
    ରୂପରସ ବହି ।' - ଚିରନ୍ତନ କୁହୁ

ପ୍ରକୃତି ବନ୍ଧୁପରି ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସଙ୍ଗ ଦେଇଥାଏ । କାହା ସହିତ ପ୍ରତାରଣା କରେ ନାହିଁ । ମରଣପରେ ଜଣେ ମହାପ୍ରକୃତିରେ ମିଶିଯାଏ । ପ୍ରକୃତି ହିଁ ଚିରନ୍ତନ ଶିକ୍ଷକ, ଯାହା ମନୁଷ୍ୟ ଅନ୍ତରକୁ ପ୍ରେରଣା - ପ୍ରଣୋଦିତ କରେ । କବି ୱାର୍ଡ଼ସୱାର୍ଥ ଯଥାର୍ଥରେ ତେଣୁ ଲେଖିଛନ୍ତି -

'One impulse from a vernae wood
May teach you more of man
Of moral evil and good.
Than all the sages can.'

ପୁଣି ଯୌବନର ବନ୍ଦନାଗୀତି ଗାଇବାରେ କାଳିନ୍ଦୀଚରଣଙ୍କ କବିଚିତ୍ତ ଗୋଟିଏ ମହାଦିଗନ୍ତ ପ୍ରତି ଉନ୍ମୁଖ ହୋଇଛି । ଅନ୍ୟମାନଙ୍କ ପରି ସେ କେବଳ ଦେହ ଭୋଗ ଲାଳସା ପାଇଁ ଯୌବନକୁ ପ୍ରଶସ୍ତ ମନେକରି ନାହାନ୍ତି । ଯୌବନ ତାଙ୍କ କଣ୍ଠରେ ଅମର ଗୀତି ଆଣି ଭରି ଦେଉ ଏହା ସେ ଯେପରି ପ୍ରାର୍ଥନା କରିଛନ୍ତି ।

'ଯଉବନ ! ଯଉବନ ! କଣ୍ଠ ତଟେ ଢାଳି ଦିଅ ଗୀତ
ଜୀବନ ମନ୍ଦିର ଚୂଳେ ଜଳିଉଠୁ ମୋର ମହାଦୀପ,
ଜଳିଉଠୁ ଗଗନର ଅଗଣିତ ଜ୍ୟୋତିରାଶି ତଳେ
ଅସୀମ ଆଶାର ରୂପେ ଶିଖା ତାର ଖେଳୁଏ ବିଶ୍ୱରେ ।' (ମହାଦୀପ)

କବି ନିଜ ଗୀତ ବିଷୟରେ ଇସ୍ତାହାର ଦେଇଛନ୍ତି । ପୁରୁଣା କାଳର କବିଟିଏ ଶବ୍ଦ ଯୋଡୁଥିଲା କେବଳ ଅଳଙ୍କାର ପାଇଁ । ଯେଉଁ ଅଳଙ୍କାର ମଣିଷ ପ୍ରତି ବିମୁଖ ଥିଲା । ସେଥିପାଇଁ କବି କାଳିନ୍ଦୀଚରଣ କୁଞ୍ଜବନର କବିମାନଙ୍କ କବିତାଦର୍ଶକୁ ଆଦୌ ଗ୍ରହଣ କରିପାରି ନାହାନ୍ତି । କବି ମଣିଷ ଜାତିର ବ୍ୟଥା ତା'ର ସନ୍ତାପ ତା'ର ସଂଗ୍ରାମର କଥା କହିବାକୁ ସମୀଚୀନ ମନେକରିଛନ୍ତି । କବିତା ସବୁ କାଳରେ ସତ୍ୟର ଅନ୍ୱେଷଣ (exploration of truth) ଓ କବି ହେଉଛି ସତ୍ୟବାକ୍ । ଯେଉଁ କବିତାରେ ମଣିଷକୁ ଆଗକୁ ଯିବାର ଜଡ଼ତା, ଅଜ୍ଞାନ ଅନ୍ଧକାରକୁ ପଛରେ ପକାଇ ଦେବାର ପ୍ରେରଣା ନଥାଏ ସେ କବିତା କେବଳ ପୁରୁଣା ଆଳଙ୍କାରିକ କବିତା । ସେ କବିତାକୁ କବି ଅସ୍ୱୀକାର କରି ଲେଖିଛନ୍ତି -

'ଯେ ବାଣୀ ଛୁଇଁନି
ଗୋଟିଏ ଜାତିର କୋଟିଏ ବୁକେ
ସେ ବାଣୀ ମୋହର
ନ ହେଉ ଗୋଚର ନ ଆସୁ ମୁଖେ

ଯେ ବାଣୀ ନ କହେ
　　ମଣିଷ ଜାତିର ଶୋଣିତ ବ୍ୟଥା
ସେ ନୋହୁ ମୋ ଭାଷା
　　ସେ ବାଣୀ ମୋହର ନ ହେଉ କଥା
ଯେ ବାଣୀ ଲୁଚାଏ
　　ମିଛକୁ ଆପଣା ଗରଭେ ଜାକି
ମୋ ବାଣୀ ତାହାର
　　ପଠାଉ ଜବାବ ସଜୋରେ ଡାକି ।'

ମଣିଷର ସୁନ୍ଦର ନିଷ୍କପଟ ଜୀବନ ଜିଇଁବା ପ୍ରତି କାଳିନ୍ଦୀଚରଣଙ୍କ କବିଚିତ୍ତ ଅଙ୍ଗୀକାରବଦ୍ଧ ଥିଲା । ସେ କେବଳ ମଣିଷକୁ ସବୁମତେ ଗୋଟିଏ ସୁନ୍ଦର ଜୀବନ ଆଡ଼କୁ ନେଇଯିବା ପାଇଁ ପ୍ରୋତ୍ସାହିତ କରିଛନ୍ତି । କ୍ଷୁଧା, ତୃଷା, ଅପମାନ, ଲାଞ୍ଛନା ତାଙ୍କ କବି ଚିତ୍ତକୁ ବ୍ୟଥିତ କରିଛି । ସର୍ବହରା ମଣିଷ ପ୍ରତି ତାଙ୍କ ଆତ୍ମାର ସମର୍ଥନ ତାଙ୍କ କବିତାକୁ ଏତେ ଉଷ୍ମ ସ୍ପନ୍ଦନ ଆଣି ଦେଇଛି । ଅତୀତ ପ୍ରତି ନିବିଡ ସମ୍ମୋହନ ଯୌବନର ପ୍ରଣୟ ଆତୁରତା ଭିତରେ ବି ସେ ନିପୀଡ଼ିତ ମଣିଷଙ୍କ ଭାବନାରୁ ନିଜ କବି କଳ୍ପନାକୁ ଦୂରକୁ ନେଇଯାଇ ନାହାନ୍ତି । ତାଙ୍କ କବିଚିତ୍ତର ଭୂମି ସଂଲଗ୍ନ ବାସ୍ତବତାକୁ ନାନା ଭାବରେ ଲକ୍ଷ୍ୟ କରାଯାଇପାରେ ।

କାଳିନ୍ଦୀଚରଣ ଥିଲେ ଜଣେ ପ୍ରକୃତି ଉପାସକ କବି । ବର୍ଷା ବସନ୍ତ, ସଞ୍ଜ ସକାଳ, ମାଟି ଓ ଆକାଶ ତାଙ୍କ ପ୍ରାଣକୁ ସିକ୍ତ କରିଛି । ପ୍ରକୃତି ପ୍ରତି ତାଙ୍କର ଏହି ଉନ୍ମୁଖତା ତାଙ୍କ କବିତାକୁ ଅଧିକ ଆବେଗିକ ତୀବ୍ରତା ଆଣିଦେଇଛି । 'ଫଗୁଣ ଜ୍ୟୋତ୍ସ୍ନା' କବିତାରେ କବି ଗାଇଛନ୍ତି -

'ପବନ ସେ ରଣରଣି ବହଇ
କାନେ କାନେ କାହା କଥା କହଇ
ପୀଡ଼ିତ ଉଦାସ ମୋର ମରମ
ଚଞ୍ଚଳି ଉଠେ ତେଜି ସରମ
ଉପୁଜାଇ ବିଶ୍ୱର ଭରମ
କେଉଁ ଫୁଲ ବାସି ଉଠି ମୋହଇ' । - ଫଗୁଣ ଜ୍ୟୋତ୍ସ୍ନା

ଯେଉଁ କବି ଯେତେ ପ୍ରେମ ପ୍ରଣୟର ଗୀତ ଗାଇଥାନ୍ତି ସେମାନେ ସେତିକି ଦୁଃଖ ବେଦନାର ଚିତ୍ର ଆଙ୍କିଥାନ୍ତି । କାଳିନ୍ଦୀଚରଣ ବେଦନା - ବ୍ୟାକୁଳ କୀଟ୍‌ସଙ୍କ ପରି ବେଦନାଦଗ୍ଧ ପ୍ରେମର ଗୀତ ଗାଇଛନ୍ତି ।

'କେତେ ନବନବ ସ୍ୱର ଛନ୍ଦେ
ଜୀବନର କ୍ଷତରାଶି ପୂରିଉଠେ
କେବେ ଦୁଃଖ କେବେ ମହାନନ୍ଦେ । - ସ୍ୱପ୍ନ ସୃଜନ

କବି କାଳିନ୍ଦୀଚରଣ ଯଥାର୍ଥରେ ଜଣେ ମରମୀ ପର୍ଯ୍ୟବେକ୍ଷକ । ସେ ପରମ ପ୍ରକୃତିକୁ ତଟସ୍ଥ ହୋଇ ଦେଖିଛନ୍ତି । ସେ କେବଳ ପ୍ରେମର ଯୌବନର ରସଗୀତ ଗାଇ ନାହାନ୍ତି, ତା' ସହିତ ସେ ଗାଇଛନ୍ତି ଆଶା ଆନନ୍ଦର ଚମତ୍କାର ଗୀତ; ଯାହା ପାଠକର ପ୍ରାଣକୁ ଶତତ ପ୍ରବୋଧିତ କରିଦିଏ । ସେ ପୁରାତନ ନିଗଡ଼ରୁ ମୁକ୍ତ ହୋଇ ନୂତନ ସ୍ୱପ୍ନ, ନୂତନ ଜୀବନର ସ୍ପର୍ଶ ଲଭିବାକୁ ବ୍ୟାକୁଳ ହୋଇଉଠିଛନ୍ତି । ସେ ତେଣୁ ଗାଇଛନ୍ତି - 'ପୁରୁଣା ମେଘ ସହି / ଆସଇ ନୂଆ ହୋଇ / କରିବି ନୂଆ କଥା ରଚନା / କହିବି ଜୀବନର / ଗୋପନ କଥା ମୋର / ଲୁଚିଲା ଯେତେ କ୍ଷତ ଶୋଚନା ।

ପ୍ରକୃତ ଦରଦୀ ଶିଳ୍ପୀଟିଏ ମଣିଷର ବ୍ୟଥା ବେଦନା ଦୂର କରିବା ପାଇଁ ହିଁ ସ୍ୱପ୍ନ ଦେଖେ । ଏକାନ୍ତ ଚିର ସମ୍ମୋହକ ଶୈଶବ ଭାବନାରେ ନିମଜ୍ଜିତ ହୋଇଥିବା ସେହି 'ପାଶୋରି ଦେଲିରେ ଶିମୁଳିପାଳ' କବିତାରେ ମଧ୍ୟ କାଳିନ୍ଦୀଚରଣ ମଣିଷର କ୍ଷୁଧା ମୃତ୍ୟୁ ବିଷୟରେ ବ୍ୟଥିତ ହୋଇଛନ୍ତି -

'କି ଗୀତ ତୋ ଆଗେ ଗାଇବି କହରେ ଶିମୁଳିପାଳ
ରକତ ମୋହର ବରଫ, ହାଡ଼ ଯେ ହୋଇଛି ପାଣି
କଣ୍ଠେ ଶୁଖିଛି ରସନା ବାସନା ନ ଆସେ କଥା
କ୍ଷୁଧିତ ମାନବ କାକୁତି କରଇ ପଡାଇ ଥାଳ
ପଥ ପରେ ଶତମାନବର ଶିଶୁ ଦେଖାଏ କାନି
ଅକାଳେ ଝାଉଁଳି ପଡ଼ଇ କେତେରେ ଜୀବନ ଲତା ।'

'ଛୁରୀଟିଏ ଲୋଡ଼ା' କବିତା ସତରେ ଏକ ଆହ୍ୱାନ । ପୀଡ଼ିତ ମଣିଷଙ୍କ ପ୍ରତି ଆତ୍ମାର ଏକ ବଳଶାଳୀ ସମର୍ଥନ 'ଛୁରୀଟିଏ ଲୋଡ଼ା'କବିତାଟି ତେଣୁ ଏକ ଅଲଗା ପ୍ରକାରର କବିତା; ଯାହା ପାଠକର ଅନ୍ତରକୁ ଛୁଏଁ । ତା'ର ଚିରକୁ ଉଚ୍ଛୁଳା ଆବେଗରେ ଭରିଦିଏ । କବିଟିଏ ଯେଉଁ ଭଗବାନର ପୂଜାକରେ ସେ ଭଗବାନ ବୋଧହୁଏ ନିପୀଡ଼ିତ ମୂକ ମଣିଷଟିଏ, ଶୋଷିତ ମଜଦୁରଟିଏ । ସେ ଯେଉଁ ପ୍ରକୃତିର ଆରାଧନା କରେ ସେ ପ୍ରକୃତିକୁ ମଣିଷର ଉପସ୍ଥିତି ଯେପରି ଅର୍ଥଗର୍ଭା କରିଛି । କାଳିନ୍ଦୀଚରଣ ଏ ସମ୍ପର୍କରେ ତେଣୁ ଲେଖିଛନ୍ତି - 'ମଣିଷ ମଣିଷ ଶୁଭିଲା ଦୂରରୁ ଡାକ / ଦୁନିଆର ଯେତେ ଦଳିତ ପୀଡ଼ିତ ଯାକ / ସ୍ପନ୍ଦନ ସେହି ପୁଲକ ପରାଣ ରେଖା / ବନ୍ଧୁର ପଥେ ବନ୍ଧୁ ସେ ମୋର ଏକା ।'

କାଳିନ୍ଦୀଚରଣ ରେଭେନ୍‌ସା କଲେଜର ଛାତ୍ର ଥିଲାବେଳେ ଯେଉଁ ସବୁ କବିତା ଲେଖିଥିଲେ ତା'ର ଅଧିକ ବିକଶିତ ରୂପ ଆମେ ତାଙ୍କ ପରବର୍ତ୍ତୀ କବିତାରେ ଦେଖୁ । 'ସବୁଜ କବିତା' ସଂକଳନଟି ଅନ୍ନଦାଶଙ୍କର, ହରିହର, ବୈକୁଣ୍ଠନାଥ, ଶରତଚନ୍ଦ୍ର ତଥା କାଳିନ୍ଦୀଚରଣଙ୍କ ଯୌଥ ଉଦ୍ୟମର ଏକ ଅତ୍ୟନ୍ତ ପ୍ରତିଶ୍ରୁତିପୂର୍ଣ୍ଣ ସାରସ୍ୱତ ନିଦର୍ଶନ । କବିଙ୍କ 'ଲୋହିତ ବ୍ୟଥା', 'ପୁରୀ ମନ୍ଦିର', 'ମଧୁ ବିବାହ', 'ଫଗୁଣ ବଂଶୀ', 'ପ୍ରଭାତ ଗୀତର ଗୌରବ', 'ସନ୍ଧ୍ୟାଲୋକ'

ତଥା 'ସାଧନା' ଆଦି କବିତା 'ମୁକୁଳ' ଶିରୋନାମାରେ 'ସବୁଜ କବିତା' ଗ୍ରନ୍ଥରେ ସ୍ଥାନିତ ହୋଇଛି । ସବୁଜମାନଙ୍କର ଏ ପ୍ରକାର ଅଭିନବ ଉଦ୍ୟମ ଓଡ଼ିଆ କବିତା ଧାରାରେ ଏକ ଉଲ୍ଲେଖଯୋଗ୍ୟ କ୍ରାନ୍ତି । କାଳିନ୍ଦୀଚରଣଙ୍କ ଅତୀତ ପ୍ରତି ଅଶେଷ ସମ୍ମୋହନ ଥିଲା । ଅତୀତର ସୁନ୍ଦର ପ୍ରେମପୂର୍ଣ୍ଣ ଦିନମାନଙ୍କ ପାଇଁ ତାଙ୍କର ଗୋଟିଏ ଉଚ୍ଛଳ ଆବେଗ ଥିଲା । କବି ୱାର୍ଡ୍‌ସ୍‌ୱାର୍ଥଙ୍କ ପରି କାଳିନ୍ଦୀଚରଣଙ୍କ କାବ୍ୟସ୍ୱର ବହୁଭାବରେ ଅତୀତମୁଖୀ; ଯେଉଁଥି ପାଇଁ ତାଙ୍କ ପଲ୍ଲୀ ଓ ପ୍ରକୃତିପ୍ରାଣତା ତାଙ୍କୁ ବହୁଭାବରେ ବିହ୍ୱଳ କରିଛି; ଯାହା ତାଙ୍କ ସମୟରେ ଅନ୍ୟ ସବୁଜ କବିଙ୍କ କବିତାରେ ରୂପାୟିତ ହୋଇ ପାରିନି ।

ଅତୀତ ପ୍ରତି କାଳିନ୍ଦୀଚରଣ କେତେ ଉନ୍ମୁଖ ଥିଲେ ତା'ର ସୂଚନା ନିମ୍ନୋକ୍ତ ଧାଡ଼ିରୁ ହିଁ ମିଳେ । କାଳିନ୍ଦୀଚରଣ ଲେଖିଛନ୍ତି - 'ମନେ ଅଛି ଶଇଶବେ ପ୍ରଥମେ ତୋ ରୂପ ଦରଶନେ / ତୋ ନିବିଡ଼ ଚେତନାର ସୁଧା ଦରଶନେ/ଉତ୍‌ଫୁଲ୍ଲ ବାଳକ ହିଆ ନାଚୁଥିଲା/ ଏହି ସଇକତେ / ଶିଶୁର ରକତେ / ଛୁଟିଥିଲା କି ବିଦ୍ୟୁତ୍ କି ଉଦ୍ଦାମ ତେଜ / ତୋ ସିକତା ଶେଯ / କରି ପୁଣି ଯଉବନେ ସଂଶୟ ଦୋଳାରେ / ଜୀବନ ଭେଳାରେ ।' ଅତୀତକୁ ବାରମ୍ବାର ସ୍ମରଣକୁ ଆଣିବାରେ କବି ଚିର ସବୁକାଳରେ କିପରି ସ୍ପନ୍ଦିତ ହୋଇଛି, ଉଲ୍ଲିଖିତ ଧାଡ଼ିଗୁଡ଼ିକ ତା'ର ନିଦର୍ଶନ । ୱାର୍ଡ୍‌ସ୍‌ୱାର୍ଥଙ୍କର ଶୈଶବ ପ୍ରତି ଯେଉଁ ମଧୁର ଆକର୍ଷଣ ଥିଲା ଆମେ କାଳିନ୍ଦୀଙ୍କ କବିତାରେ ସେମିତି ଆକର୍ଷଣର ସରସ ବର୍ଣ୍ଣନା ପାଉଁ । ୱାର୍ଡ୍‌ସ୍‌ୱାର୍ଥ ତାଙ୍କ The Preludeରେ ଲେଖିଛନ୍ତି -

"Our simple childhood sits upon a throne

That hath more power that all the elements

I guess not what this tells of being past

Nor what it augurs of the life to come

But so it is." (The Prelude - Wordsworth)

ଆମ ସମସ୍ତଙ୍କ ଶୈଶବ ଜୀବନର ସବୁ କିଛି ଅପେକ୍ଷା ଅତୀତର ସ୍ମୃତି ଚୟନ କରିବାକୁ ଅଧିକ ସମର୍ଥ ଓ ଶକ୍ତିଶାଳୀ, ଯାହା ଆନନ୍ଦର ପ୍ରକୃତ ଉତ୍ସ ।

କବି ଜୀବନର ଅତୀତକୁ ଝୁରି ହେବାରେ ଯେଉଁ ମାନବୀୟ ସଂବେଗର ପରିଚୟ ଦେଇଛନ୍ତି ତାହା ତାଙ୍କ କବିତ୍ୱର ଅସଲ ନିଦର୍ଶନ । ପାପପୁଣ୍ୟ ସବୁକିଛି ଊର୍ଦ୍ଧ୍ୱରେ ଜୀବନ ସୁନ୍ଦର । ଅସଲ କଳା ଓ କବିତ୍ୱ ହେଉଛି ଜୀବନକୁ ନିଃସର୍ତ୍ତ ଭାବେ ଅନୁଭବ କରିବା । କାଳିନ୍ଦୀଚରଣ କାମନା କରିଛନ୍ତି ଯେ ମୃତ୍ୟୁ, ପାପଭୟ ମିଳନକୁ ମଳିନ କରି ନଦେଇ ଜୀବନ ଭୋଗରେ ବାଧା ସୃଷ୍ଟି ନକରୁ । ଜୀବନ ପ୍ରତି ତନ୍ମୟତା ତାଙ୍କୁ ଯେମିତି ବିହ୍ୱଳ କରିଛି ସେମିତି ରହସ୍ୟବାଦୀ ବି କରିଛି । ସେ ଗାଇଛନ୍ତି -

'ଜୀବନେ ଯେତେ କରିଛି ଜାଣି ପାପ

ତା' ପାଇଁ ନାହିଁ ବେଦନା ଅନୁତାପ,

ପୀରତିଠାରୁ ଅଧିକ ପ୍ରିୟ

ଲାଜରୁ ବଳି ସେ ଗୋପନୀୟ

ଦୁଃଖରୁ ବେଶୀ କୋମଳତର

ସ୍ମୃତିରୁ ଲୋଭନୀୟ,

ପୀରତିଠାରୁ ଅଧିକ ସେ ଯେ ପ୍ରିୟ ।' - ପାପ

କାଳିନ୍ଦୀଚରଣଙ୍କ ୧୯୨୭ ରେ ରଚିତ ରବୀନ୍ଦ୍ରନାଥଙ୍କ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ 'ପୁରୀ ମନ୍ଦିର' କବିତା ଏକ ଚମତ୍କାର ତଥା ଶକ୍ତିଶାଳୀ କବିତା । ଏଥିରେ ମାନବତାବାଦୀ ତଥା ସାମ୍ୟବାଦୀ ଚେତନାର ଇସ୍ତାହାର ଅଛି । 'ପୁରୀ ମନ୍ଦିର' କବିତା ଆରମ୍ଭରେ କାଳିନ୍ଦୀ ଚରଣ ଦେବତାଙ୍କୁ ସମ୍ବୋଧନ କରି ଲେଖିଛନ୍ତି - 'କାଷ୍ଠ ପାଷାଣ ଗଠିତ ହେ ନିର୍ଜୀବ ଦେବତା - ମୂରତି/ ଏ ଦେଶ ଶୋଣିତେ ଆଜି ଜାଗ୍ରତ ଯେ ବିଶ୍ୱର କୀରତି / ମାନବର ଶିଳ୍ପକଳା କଳ୍ପନା ଘଟିତ / ଯୁଗ ଯୁଗ ଧରି ଯାହା ହୋଇଛି ଗଠିତ / ମାନବର ହସ୍ତେ ବହି ରୂପ / ଭାଗ୍ୟେ ତା'ର କରୁଛି ବିଦ୍ରୂପ / ଅନ୍ତର ଗୁହାରି/ ଶୁଣ କି ତାହାରି / ଶୂନ୍ୟ ପ୍ରାଣ / ହେ ପାଷାଣ !'

କବି କାଳିନ୍ଦୀଚରଣ ଯେପରି ଜଣେ ମାନବବାଦୀ କବି, ସେହିପରି ଜଣେ ପ୍ରକୃତି-ପ୍ରାଣ ଓ ଶୈଶବ ପ୍ରତି ସମ୍ମୋହିତ ହେଉଥିବା କବି । ନିଜର ଅତୀତ ଜୀବନ ତାଙ୍କୁ ସର୍ବଦା ବିଭୋର କରି ରଖିଛି । ତାଙ୍କର କବି ଅନ୍ତରଟି ଅତୀତର ବହୁ ସ୍ମୃତିକୁ ଯେପରି ଝୁରି ହୋଇଛି । ତାଙ୍କ 'କ୍ଷଣିକ ସତ୍ୟ' କବିତାରେ କାଳିନ୍ଦୀଚରଣ ନିଜ ସୁମଧୁର ଶୈଶବକୁ ସ୍ମରଣକୁ ଆଣି ଲେଖିଛନ୍ତି -

'ଚପଳ ଶଇଶବେ ତୋଳିଲି ଯେତେ ଘର

ନିଜର କଲି କେତେ କାହାକୁ କଲି ପର

ଜାଣିଲି ସୁଖ ଦୁଃଖ ମଣିଲି ସବୁ ସତ

ଜୀବନ ଜାଲ ମୋର ବୁଣିଲି ଅବିରତ ।' - କ୍ଷଣିକ ସତ୍ୟ

ଏହି 'କ୍ଷଣିକ ସତ୍ୟ' କବିତାଟି କାଳିନ୍ଦୀଚରଣଙ୍କ କବିତ୍ୱର ଏକ ଉଜ୍ଜ୍ୱଳ ଦିଗକୁ ପ୍ରକଟିତ କରିଛି । ୧୯୩୪ ଖ୍ରୀ.ଅ.ରେ ବାରିପଦାରେ ଅବସ୍ଥାନ କଲାବେଳେ କବି କାଳିନ୍ଦୀଚରଣ ତନ୍ମୟତା- ବଶତଃ ଖୁବ୍ ଚମତ୍କାର ଭାବେ ନିଜ ଅତୀତ ଜୀବନକୁ ବର୍ଣ୍ଣନା କରିଛନ୍ତି । 'କ୍ଷଣିକ ସତ୍ୟ' କବିତା ଗ୍ରନ୍ଥର 'ରୂପର ମୋହ','ପ୍ରତିମା', 'ଜୟ ଭଗବାନ', 'ରୂପର ସ୍ତବ', ପ୍ରଭାତ ପ୍ରାସ, 'ଜୀବନ ମରଣ', 'ପଥର ପ୍ରେମିକ', ବ୍ୟବଧାନ', 'ବର୍ଷାବଧୂ', 'ଆଶ୍ଳେଷ ସ୍ୱର୍ଗ' ଆଦି କବିତାରେ କବି କମ୍ ବେଶୀରେ ତାଙ୍କ ସୁମଧୁର ଅତୀତକୁ ରୂପାୟିତ କରିଛନ୍ତି । ପ୍ରାଚୀନ, ନବୀନ, ସୁନା ଆଦି କେତେ କବିତା ଅଧିକ ଶିକ୍ଷାନିଷ୍ଠ । ଏହିସବୁ କବିତା ଛାତ୍ରଛାତ୍ରୀମାନଙ୍କ

ପାଇଁ ବେଶ୍ ସୁପାଠ୍ୟ ହୋଇପାରିଛି । କାଳିନ୍ଦୀଚରଣଙ୍କ 'ପୁରୀ ମନ୍ଦିର', 'ଗାନ୍ଧାରୀର ଆଶୀର୍ବାଦ' ଆଦି କବିତା କଲେଜର ପ୍ରାଥମିକ ଶ୍ରେଣୀର ଛାତ୍ରଛାତ୍ରୀମାନେ ପଢ଼ନ୍ତି । କାଳିନ୍ଦୀଚରଣ ଯଥାର୍ଥରେ ଏପରି ଜଣେ କବି ଓ କଥାଶିଳ୍ପୀ, ଏପରି ଜଣେ ପ୍ରାବନ୍ଧିକ ଓ ନିବନ୍ଧକାର ଯାହାଙ୍କ ଲେଖା ଅତି ତଳଶ୍ରେଣୀରୁ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଏହା ହେଉଛି ସାହିତ୍ୟିକ କାଳିନ୍ଦୀଚରଣଙ୍କ ଜୀବନରେ ଏକ ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ।

ତାଙ୍କର 'ପ୍ରକୃତି ପୁରୁଷ', 'ଅରୂପର ଆହ୍ୱାନ', 'ପ୍ରଭାତ', 'ଲୋଟଣିପାରା', 'ଆଷାଢ଼ ସନ୍ଧ୍ୟା', 'ଶେଷଦାନ' ଆଦି କବିତା ତାଙ୍କ କବିହୃଦୟକୁ ନାନାଭାବରେ ଚିହ୍ନିତ କରିଛି । ପୂର୍ବରୁ ସୂଚିତ ହୋଇଛି ଯେ ତାଙ୍କର 'ଯାଦୁଘର' ତଥା 'କିଏ ଶଳା ସଇତାନ' ଆଦି 'କ୍ଷଣିକ ସତ୍ୟ' କବିତା ଗ୍ରନ୍ଥରେ ସ୍ଥାନିତ ହୋଇଥିବା କବିତା ଦୁଇଟି ପ୍ରଗତିବାଦୀ ଚେତନାର କବିତା । କାଳିନ୍ଦୀଚରଣ ତାଙ୍କ 'ଯାଦୁଘର' କବିତାରେ ଲେଖିଛନ୍ତି -

'ଆଦିମ ଯୁଗରୁ ଦୁନିଆ ଭିତରେ ଗଢ଼ା ଯେତେ ସରକାର
ନିରେଖି ଚାହିଁଲେ ସବୁ ଗୁଡ଼ିକତ ଧର୍ମର ଅବତାର
ଦୁନିଆ ଯାକର ମଣିଷ ପାଇଁ ତ ଧର୍ମ ନ ମିଳେ ଏକ
ସବୁ ପୂଜା ସବୁ ଧିଆନ ଭଜନ ନୁହେଁ କି ଭୋଜନ ଭେକ'

ଧର୍ମ କିପରି ସବୁକାଳରେ ସମାଜ ଓ ସରକାରଙ୍କୁ କବଳିତ କରିଛି ତା'ର ଏକ ବାସ୍ତବ ଚିତ୍ର କବି ତାଙ୍କ 'ଯାଦୁଘର' କବିତାରେ ଆଙ୍କିଛନ୍ତି । ଧର୍ମ ନାମରେ ମଣିଷ କେତେକ କୁସଂସ୍କାର ଓ ଅନ୍ଧ ବିଶ୍ୱାସକୁ କେବଳ ପାଥେୟ କରିଛି । ଯାହା ଅନେକ ସାମାଜିକ ସଂଶୟର କାରଣ ହୋଇଛି । ଧର୍ମକୁ କବି ଶେଷରେ ଏକ ଜୀବହୀନ 'ଯାଦୁଘର' ବୋଲି ତର୍କଣା କରିଛନ୍ତି । ସେ ଲେଖିଛନ୍ତି—

'ମଣିଷ ଭିତରେ ଧାର୍ମିକ ବୋଲି ଶୁଣିଲି ଯାହାର ନାମ
ଚଳିଲା ବାସନା ନିକଟକୁ ଯାଇ ଦେଖିବା ପାଇଁ ତା କାମ,
ଦେଖିବା ପାଇଁ ତା' ରୀତି ଆଚରଣ ଖୋଲି ତା' ଧରମ ଝୋଲି
ଦୁଃଖ ଆସିଲା ଚାବୁକ ଖଣ୍ଡେ ଆଣିବାକୁ ଗଲି ଭୁଲି,
ଜୀବର ରାଇଜେ ଧର୍ମ ସେ ଖାଲି ଜୀବହୀନ ଯାଦୁଘର
ନୁହେଁ କିଛି ଆଉ ସଂଚିତ ତହିଁ କଙ୍କାଳ ଜଗତର ।'

କବି କାଳିନ୍ଦୀଚରଣ କାବ୍ୟ ଜୀବନର ଆରମ୍ଭ ୧୯୨୦ରୁ ପ୍ରାୟ ଓ ତାହା ୪୫ ମସିହା ପର୍ଯ୍ୟନ୍ତ ବିକଶିତ ହୋଇଛି । କାଳିନ୍ଦୀଚରଣ ଓଡ଼ିଶାର ଜଣେ ଯଶସ୍ୱୀ ସାରସ୍ୱତ ପୁରୁଷ ଯେ ଏକାଧାରରେ ଜଣେ ବିଶିଷ୍ଟ କବି, ଗାଳ୍ପିକ ଓ ଔପନ୍ୟାସିକ । ଯାହାଙ୍କର 'ପୁରୀ ମନ୍ଦିର', 'ମନେ ନାହିଁ', 'ଯାଦୁଘର', 'ପାଶୋରି ଦେଲିରେ ଶିମୁଳିପାଳ', 'ଲୋହିତ ବ୍ୟଥା' ଆଦି କବିତା, 'ମାଂସର ବିଳାପ' ପରି ଗଳ୍ପ ଓ ଅତି ଲୋକପ୍ରିୟ 'ମାଟିର ମଣିଷ' ପରି ଉପନ୍ୟାସ ରହିଛି । କାଳିନ୍ଦୀଚରଣ ଓଡ଼ିଶାର ରୁଚି ଓ ଆଦର୍ଶ ଊର୍ଦ୍ଧ୍ୱରେ ଅଗଣିତ ପାଠକ- ପାଠିକାଙ୍କର

ଜଣେ ପ୍ରିୟ ସାହିତ୍ୟିକ । ଓଡ଼ିଶାର ଜନଜୀବନ ତା'ର ମାଟି, ପାଣି, ପବନ, ତା'ର ସଂସ୍କୃତି, ଜାତୀୟତା, ଧର୍ମ ଧାରଣା ତଥା ବିପୁଳ ସାମାଜିକ ଜୀବନକୁ ସେ ନାନା ଭାବରେ ଲେଖିଛନ୍ତି । ସେଥିପାଇଁ ଗଦ୍ୟ ପଦ୍ୟ ନିର୍ବିଶେଷରେ ତାଙ୍କ ସାହିତ୍ୟ ରଚନାର କୃଷ୍ଟି ବା ଆଭିଜାତ୍ୟ ସମସ୍ତ ହୃଦୟକୁ ସ୍ପର୍ଶକରେ ।

ସେଥିପାଇଁ ତାଙ୍କ କବିତା, ଗଳ୍ପ, ଉପନ୍ୟାସ ସବୁର ଏକ ଭୂମି-ସଂଲଗ୍ନତାର ଗୁଣ ରହିଛି ଓ ସେ ଦୃଷ୍ଟିରୁ ମଣିଷ ଜୀବନର ସ୍ୱପ୍ନକୁ ଲେଖନ୍ତୁ କି ପ୍ରେମକୁ ଲେଖନ୍ତୁ ସବୁଥିରେ ଏକ ଉଚ୍ଚମାନର ଶାସ୍ତ୍ରୀୟତା ପିଣ୍ଡିତ ହୋଇ ରହିଛି ।

କାଳିନ୍ଦୀଚରଣଙ୍କ ସାହିତ୍ୟିକ ଜୀବନର ଉନ୍ମେଷ ଓ ଉତ୍ତରଣ ରହିଛି । ତାଙ୍କ ସମସାମୟିକ ଅନ୍ୟ ସବୁଜ କବିମାନଙ୍କ ସାହିତ୍ୟିକ ଜୀବନରେ ହୁଏତ ତାହା ଏତେ ପ୍ରତ୍ୟକ୍ଷଭାବେ ପରିଦୃଷ୍ଟ ହୁଏ ନାହିଁ । କାଳିନ୍ଦୀଚରଣ କବି ଭାବରେ ଅନ୍ୟ ସବୁଜ କବିମାନଙ୍କ ଅପେକ୍ଷା ଅଲଗା ପ୍ରକାରର ସ୍ୱପ୍ନକଳ୍ପନାର କଥା ଲେଖିଛନ୍ତି । ଲେଖିଛନ୍ତି ମଧ୍ୟ ମଣିଷର ବଞ୍ଚିବାର ସକଳ ସଂଗ୍ରାମଶୀଳତାକୁ । ସେ ଯେପରି ସ୍ୱପ୍ନାଚାରୀ କବିଟିଏ - ସେହିପରି ସଂଗ୍ରାମୀ ମଣିଷର କଥା ଲେଖିଥିବା ଜଣେ ବିପ୍ଳବୀମାନବବାଦୀ କବି । ତାଙ୍କ କବିତାର ବିଷୟ ପରିସର ବିବିଧ ଓ ସେଥିପାଇଁ ଅନ୍ୟ ସବୁଜ କବିମାନଙ୍କଠାରୁ ଅଲଗା ପ୍ରକାରର ।

ସବୁଜକବିମାନଙ୍କ ମଧ୍ୟରେ ପୁଣି ସେ ବୈପ୍ଳବିକ ସାମ୍ୟବାଦୀ ଚେତନା ତଥା ଆଧୁନିକ ଦୃଷ୍ଟିଭଙ୍ଗୀ ପ୍ରତି ଅଧିକ ଉନ୍ମୁଖ । ଏହି ପ୍ରଗତିବାଦୀ ତଥା ପରିବର୍ତ୍ତିତ ଚେତନା ତାଙ୍କ 'ଜୟ ଭଗବାନ' (୧୯୩୬), ରକ୍ତ ଓ ଚାବୁକ୍ (୧୯୩୮), ବାଜିରାଉତ (୧୯୩୮), ଯାଦୁଘର (୧୯୩୮), ଛୁରୀଟିଏ ଲୋଡ଼ା (୧୯୩୮), ମୋ ବାଣୀ, (୧୯୪୨), କିଏ ଶଳା ସଇତାନ (୧୯୪୪) ରେ ପରିଦୃଷ୍ଟ ହୁଏ ।

ମାନବବାଦ ହେଉଛି ତାଙ୍କ କବିତାର ମୁଖ୍ୟ ଚେତନା । ଯେଉଁଥିପାଇଁ ତାଙ୍କ ସବୁଜ ଗୋଷ୍ଠୀର ଅନ୍ୟ କବିଙ୍କ କବିତାଠାରୁ ତାଙ୍କ କବିତା ଅଧିକ ସାର୍ବଜନୀନ ଓ ସାର୍ବକାଳୀନ ହୋଇପାରିଛି । ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ ତଥା ରୋମାଣ୍ଟିକ କବି ମାୟାଧର ମାନସିଂହ, ବିନୋଦ ନାୟକଙ୍କୁ ପାଠକ ପ୍ରଥମେ କାଳିନ୍ଦୀଚରଣଙ୍କ କବିତାର ବହୁ ପଙ୍କ୍ତିରେ ସତେ ଯେପରି ଅନୁଭବ କରି ପାରିଛି ।

କେତେକ ସାହିତ୍ୟ ଛାତ୍ର ଓ ସମାଲୋଚକ କାଳିନ୍ଦୀଚରଣଙ୍କୁ ନିଛକ ପ୍ରେମପ୍ରଣୟର ଛବି ଆଙ୍କିଥିବା ସବୁଜଯୁଗର ଜଣେ ବିଚକ୍ଷଣ ରୋମାଣ୍ଟିକ କବି ଭାବେ ଅଭିହିତ କରିଛନ୍ତି । ଏପରିକି କେତେଜଣ ତାଙ୍କ କବିତାରେ ରାଧାନାଥୀ ପ୍ରଭାବକୁ ମଧ୍ୟ ଲକ୍ଷ୍ୟ କରିଛନ୍ତି । ମାତ୍ର 'ଆଗାମୀ' ପରି 'ଛୁରୀଟିଏ ଲୋଡ଼ା'ର କେତୋଟି କବିତା ରହିଛି ; ଯାହା ତାଙ୍କୁ ଜଣେ ବିଶିଷ୍ଟ ମାନବବାଦୀ ଆଧୁନିକ କବିର ପ୍ରତିଷ୍ଠା ଆଣିଦେଇଛି ।

କାଳିନ୍ଦୀଚରଣ ପୁଣି ସବୁଜମାନଙ୍କ ପରି ଜଣେ, ସ୍ୱପ୍ନଭୁକ୍ ସୁଦୂର ସ୍ଥାନ ଓ କାଳବିଳାସୀ କବି । କବିଙ୍କ 'ବ୍ୟର୍ଥସ୍ୱପ୍ନ' ପରି ବହୁ କବିତାରେ ରୋମାଣ୍ଟିକ ସ୍ୱପ୍ନପ୍ରବଣତା ପରିଲକ୍ଷିତ । ସେସବୁ କବିତାମାନଙ୍କରେ ଯଥେଷ୍ଟ ସ୍ୱପ୍ନଥିଲା, ନଥିଲା ବେଶୀ ବାସ୍ତବତା । ପ୍ରଣୟିନୀର ସ୍ୱପ୍ନ ତାଙ୍କ କବିଚିତ୍ତକୁ ଯେପରି ବିମୋହିତ କରି ରଖିଥିଲା । ସେ ସଂଜ ଆକାଶ, ଗୋଧୂଳି ଲଗ୍ନ, ଜହ୍ନରାତି, ବର୍ଷା ବସନ୍ତ, ସବୁକୁ ଲେଖିଛନ୍ତି ଏହି ପ୍ରଣୟିନୀର ପ୍ରଣୟକୁ ରୂପାୟିତ କରିବାରେ । ଲୋହିତ ବ୍ୟଥା (୧୯୨୪) ହେଉଛି ସେହି ଚେତନାର ଆଉ ଏକ ଆଲେଖ୍ୟ । କାଳିନ୍ଦୀଚରଣ ତାଙ୍କ ସମୟର ଅନ୍ନଦାଶଙ୍କର, ଶରତଚନ୍ଦ୍ର ଓ ବୈକୁଣ୍ଠନାଥଙ୍କ ପରି ଏତେ କଳ୍ପନାପ୍ରବଣ ନୁହନ୍ତି । କାଳିନ୍ଦୀଚରଣଙ୍କ କବିତାରେ ଯୌବନକୁ ଧରି ରଖିବା ପାଇଁ କିଛି ଅଧିକ ପ୍ରବଣତା ଅଛି । ଯୌବନର ଅର୍ଚ୍ଚନା ମଧ୍ୟ ସେ କରିଛନ୍ତି । ପ୍ରିୟାପାଇଁ କିଛି ସ୍ୱପ୍ନପ୍ରବଣତା ତାଙ୍କ କବିତାରେ ରହିଛି ; କିନ୍ତୁ ଜୀବନର ବାସ୍ତବତା ପ୍ରତି ସେ ଆଦୌ ବିମୁଖ ନଥିଲେ । ତାଙ୍କ କବିତାରେ ଯେଉଁ ନୈରାଶ୍ୟର ସ୍ୱର ରହିଛି ସବୁଜ କାବ୍ୟ ଚେତନାରେ ତାହା ଏକ ଅନିବାର୍ଯ୍ୟ ଆଦର୍ଶ ଥିଲା ; ମାତ୍ର ତାହା ଏକ ଚଳମାନ ଚେତନା ।

କାଳିନ୍ଦୀଚରଣଙ୍କ କବିତାରେ ପୁଣି ବିରହ, ମିଳନ, ଆନନ୍ଦ, ଅଶ୍ରୁ, ଜୀବନର ପ୍ରାପ୍ତି ଅପ୍ରାପ୍ତି ସବୁ ସମନ୍ୱିତ ଅଭିବ୍ୟକ୍ତି ଲାଭ କରିଛି । ତାଙ୍କର କେତୋଟି କବିତା ବିଶେଷତଃ ପଲ୍ଲୀ ଜୀବନ ଉପରେ ଆଧାରିତ କବିତା ଏକ ଏକ ଆଲେଖ୍ୟ ବା ଚିତ୍ରପଟ ପରି ମନେହୁଏ । କାଳିନ୍ଦୀଚରଣ ତାଙ୍କ ସମୟର ଅନ୍ୟ ବନ୍ଧୁମାନଙ୍କ ସହ ଜୀବନର କେବଳ ପ୍ରେମପ୍ରଣୟର ଗାଥା ଗାଇନାହାନ୍ତି । ଓଡ଼ିଶାର ଅନ୍ୟତମ ବିଶିଷ୍ଟ ରୋମାଣ୍ଟିକ କବି ବିନୋଦଚନ୍ଦ୍ର ନାୟକ କାଳିନ୍ଦୀଚରଣଙ୍କ କବିତ୍ୱ ସମ୍ପର୍କରେ ଯେଉଁ ଅଭିମତ ଦେଇଛନ୍ତି ତାହା ଯଥାର୍ଥ । ସେ ଲେଖିଛନ୍ତି- 'ବଙ୍ଗ ସାହିତ୍ୟର ରବୀନ୍ଦ୍ରନାଥ ଏବଂ ହିନ୍ଦୀ ସାହିତ୍ୟର 'ନିରାଲା'ଙ୍କ କବିତାର ସମକକ୍ଷ ଆମେ ପାଇଲୁଁ କାଳିନ୍ଦୀଚରଣ ପାଣିଗ୍ରାହୀ, ଅନ୍ନଦାଶଙ୍କର ରାୟ, ବୈକୁଣ୍ଠ ପଟ୍ଟନାୟକ, ଶରତ ଚନ୍ଦ୍ର ମୁଖର୍ଜି, ହରିହର ମହାପାତ୍ର, କୁନ୍ତଳା କୁମାରୀ ଦେବୀ, ହରିଶ୍ଚନ୍ଦ୍ର ବଡ଼ାଳ, ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ପ୍ରମୁଖଙ୍କ କବିତାର ଏକ ପରିଶୀଳିତ ରୂପ ; କିନ୍ତୁ ଏହା ଏକ ନିଛକ ଅନୁଭୂତି ନୁହେଁ - ଉତ୍କଳୀୟ ପରଂପରା ଏବଂ ସଂସ୍କୃତିରେ ଏହାର ବର୍ଣ୍ଣ- ବିଭବ ସ୍ୱତନ୍ତ୍ର । କବି କାଳିନ୍ଦୀଚରଣ ଏ ସମୟର ଏକ ଉଦାର ସ୍ୱର । ଶବ୍ଦନିର୍ଭର ଏବଂ ଇଙ୍ଗିତ ଓ ଆଭାସମୟ କବିତାର ସେ ଉଦ୍‌ଗାତା । ଭାରତର ମୁକ୍ତି ସଂଗ୍ରାମ ଏବଂ ସଂପୂର୍ଣ୍ଣ ଉତ୍କଳରାଷ୍ଟ୍ର ଗଠନର ପଟ୍ଟଭୂମି ଉପରେ ସେ ଦଣ୍ଡାୟମାନ । ଅନ୍ତରରେ ନିର୍ମାଣର ଆବେଗ ଏବଂ ନୂତନ ପ୍ରତିଶ୍ରୁତିର ଅନେକ ସମ୍ଭାବନାରେ ତାଙ୍କର ସାହିତ୍ୟ ସର୍ଜନା ସ୍ୱାକ୍ଷରିତ । ତାଙ୍କର କାବ୍ୟ - ସମ୍ଭାର ସ୍ପର୍ଶ କଲା ସମୟରେ ଏକ ସ୍ଥିର ସମୟର ନାଡ଼ୀ ସ୍ପନ୍ଦନର ପରିଚୟ ମିଳେ । ମୋ ସମ୍ମୁଖରେ ତାଙ୍କର 'କବିତା ସମଗ୍ର' ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରୁ ଚତୁର୍ଥ ଦଶକ ମଧ୍ୟରେ ସୃଜନଶାଳୀ ଏକ ଦୀପ୍ତ ପ୍ରତିଭାର କମନୀୟ ଅବଦାନ ।'

୧୯୩୩ ପର୍ଯ୍ୟନ୍ତ କାଳିନ୍ଦୀ ମୁଖ୍ୟତଃ ରୋମାଣ୍ଟିକ କବିତା ରଚନା କରୁଥିଲେ । ତା'ପରେ ତାଙ୍କର ଜୀବନ ଦର୍ଶନ ପରିବର୍ତ୍ତିତ ହୋଇଛି ଓ ସେ ବାସ୍ତବ ଜୀବନର ଆଲେଖ୍ୟ ଅଙ୍କନ କରିଛନ୍ତି ପଦ୍ୟ ପରିବର୍ତ୍ତେ ଗଦ୍ୟରେ । ୧୯୩୧ରେ ରଚିତ ତାଙ୍କର 'ମାଟିର ମଣିଷ' ଯାହାକି ଏକ ଉତ୍କୃଷ୍ଟ ପ୍ରମାଣ । କବି କାଳିନ୍ଦୀଚରଣ କୀଟ୍‌ସ ଓ ଶେଲୀଙ୍କ ପରି କେତେକ ପ୍ରସିଦ୍ଧ ଇଂରାଜୀ କବିଙ୍କ କବିତା ଦ୍ୱାରା ପ୍ରଭାବିତ ହୋଇଛନ୍ତି । କୀଟ୍‌ସଙ୍କ "Ode to the Nightingale" ପରି କବି କାଳିନ୍ଦୀଚରଣ ତାଙ୍କ 'କୁହୁପ୍ରାସ' କବିତାରେ କୋକିଳର କୂଜନରେ ଚରମ ଉଲ୍ଲାସ ଅନୁଭବର କଥା ଲେଖିଛନ୍ତି । କବି ଲେଖିଛନ୍ତି -

'ଧରଣୀ ହେଲା କୋମଳତମ ଆକାଶ କମନୀୟ
ମରଣ ହେଲା ମଧୁରତର ଜୀବନ ହେଲା ପ୍ରିୟ ।'

କବି କାଳିନ୍ଦୀଚରଣ କେବଳ ଜଣେ ବିପ୍ଳବୀ କବି ନଥିଲେ କି କେବଳ ଜଣେ ସ୍ୱପ୍ନବିଳାସୀ କବି ନଥିଲେ । ସେ ଥିଲେ ବିରହ-ମିଳନ-ପ୍ରେମ-କରୁଣାର ବିମୁଗ୍‌ଧ ଅନୁଭୂତିର ଚିତ୍ରକର । ତାଙ୍କର 'ମାନସୀ' କବିତା ସେହି ଚିତ୍ରପଟର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ -

'ମରମେ ଲେଖଇ ବିରହ ଯାହାର ଦୁରୂହ ବ୍ୟଥା
ମିଳନ ଯାହାର ସଜଳ କରଇ କଜଳ ପତା
ସେଇ ସେ ମନର ମାନସୀ ଆଶାରେ ଝୁରଇ ବସି
ତା' ଲାଗି ଚିଟାଉ ଲେଖିବାକୁ ମୁଁ ଗୋ ଖୋଜଇ କଥା ।' - ମାନସୀ

ଗଭୀର ପ୍ରେମରେ ମର୍ତ୍ତ୍ୟର ମାନବୀ ଜଣେ ଦେବୀକୁ ଉନ୍ନୀତ ହୋଇଯାଏ । ଏହି ଅନୁଭବ ପ୍ରତି କାଳିନ୍ଦୀଚରଣଙ୍କ ଆତ୍ମାର ସମର୍ଥନ ତାଙ୍କର ଅନେକ କବିତାକୁ ଅନୁଭବପ୍ରଧାନ କରିଛି । ତ୍ୟାଗର ବାସନା ପ୍ରେମକୁ ମହାନତା ଆଣିଦିଏ । ତ୍ୟାଗ ହିଁ ପ୍ରେମକୁ ଗୌରବମଣ୍ଡିତ କରେ । ଯିଏ ପ୍ରେମକୁ ଗୌରବାନ୍ୱିତ କରିପାରେ ନାହିଁ ସେ ଏକ ବିଫଳ ପ୍ରେମିକ । କବି କାଳିନ୍ଦୀଚରଣ ଅନ୍ତରରେ ପ୍ରେମିକାକୁ ଦେବୀ ଜ୍ଞାନ କରିଛନ୍ତି । କବି ଲେଖିଛନ୍ତି -

'ତିଆଗି ଯିବି ସବୁ ତୁମରି ଲାଗି ସଖି
ତୁମରି ପଦେ ମୋର ଜୀବନ ପୂଜା ରଖି
ଜାଣେ ଗୋ ଜାଣେ ସହି
ଆଦର ସଦା ବହି
ତୋଳିବ ଧୂଳି ତଳୁ
ପରମ ପ୍ରୀତି ବଳୁ ।' - ଆଶ୍ୱାସନା

କାଳିନ୍ଦୀଚରଣ ମଧ୍ୟ କେତେକ ଚମତ୍କାର ଭକ୍ତି କବିତା ଲେଖିଛନ୍ତି । ଉପନିଷଦୀୟ ଚେତନା ଏହି ଭକ୍ତି କବିତାରେ ପରିଦୃଷ୍ଟ ହୁଏ । ତାଙ୍କର 'ପ୍ରସାଧନ', 'ଆଶ୍ଳେଷ ସ୍ୱର୍ଗ', 'ବିଶ୍ୱର ଆହ୍ୱାନ' ଏହି ପର୍ଯ୍ୟାୟର ଭକ୍ତିଭାବସମ୍ବଳିତ କବିତା । ସେ ଯେତେବେଳେ ଲେଖିଛନ୍ତି-

'ସବୁ କୋଳାହଳ ଭେଦି ଶୁଣିବି ମୁଁ/ଶବ୍ଦହୀନ ନୀରବତା ଡାକ' ସେତେବେଳେ ଜଣେ ପାଠକ ତାଙ୍କ କବିତାରେ କିଛି ରହସ୍ୟବାଦୀ ଅନୁଚିନ୍ତାର ସନ୍ଧାନ କରେ । ବୈକୁଣ୍ଠନାଥ ପଟ୍ଟନାୟକ ତାଙ୍କ କବିତାମାନଙ୍କରେ ଯେତେ ଅଧିକ ରହସ୍ୟବାଦୀ କାଳିନ୍ଦୀଚରଣ ସେତିକି ଅବଶ୍ୟ ରହସ୍ୟବାଦୀ ନୁହନ୍ତି । ତଥାପି ତାଙ୍କ କବିତିର ଇନ୍ଦ୍ରିୟରୁ ଇନ୍ଦ୍ରିୟାତୀତ ଆଡ଼କୁ ଓ ପାର୍ଥିବତାରୁ ଅପାର୍ଥିବତା ଆଡ଼େ ଉନ୍ମୋଚିତ ହୋଇଛି ।

କାଳିନ୍ଦୀଚରଣଙ୍କ କବି ବ୍ୟକ୍ତିତ୍ୱର ସବୁକିଛି ପରିଚୟ ଊର୍ଦ୍ଧ୍ୱରେ; ସେ ଥିଲେ ଏକାନ୍ତ ଜୀବନବାଦୀ କବି । ପାଦ ଥାପିଥିବା ଏ ପୃଥିବୀ ତାଙ୍କ ପାଇଁ ସବୁଠାରୁ ପ୍ରିୟ ଓ ବିଶ୍ୱସନୀୟ । ଜୀବନ ଯେତେ ଦୁଃଖଦ ହେଲେ ବି ତାହା ତାଙ୍କ ପାଇଁ ଦେବତାର ଆଶୀର୍ବାଦ ପରି । ସ୍ୱର୍ଗ ନୁହେଁ ମର୍ତ୍ତ୍ୟହିଁ ତାଙ୍କର କାମ୍ୟ । ଏହି ମର୍ତ୍ତ୍ୟକୁ କବି ଅମରାବତୀ ବୋଲି ଜ୍ଞାନ କରିଛନ୍ତି । ଏ ମରଜୀବନକୁ କବି ପୁଣି କୋଟିନିଧି ବୋଲି ମନେ କରିଛନ୍ତି । ଏ ଜଗତକୁ ସେ ସୁନ୍ଦର ଓ ଶୁଭଙ୍କର ବୋଲି ଉପଲବ୍ଧି କରିଛନ୍ତି । ସେ ତେଣୁ ଲେଖିଛନ୍ତି- 'ଏ ଜୀବନେ ଲଭିଛି ଯେ ନିଧି; ତୁଚ୍ଛ କରିଦିଏ ସ୍ୱର୍ଗ ସିଦ୍ଧି/ ଭୋଗିବାକୁ ତାହା / ବେଳ ନାହିଁ ଆହା/ କିବା ଲୋଡ଼ା, ସ୍ୱର୍ଗ ଯୋଡ଼ା । ମର୍ତ୍ତ୍ୟ ଓ ମଣିଷ ତାଙ୍କ ପାଇଁ ଅତ୍ୟନ୍ତ ପ୍ରିୟ ଓ ପରମ ।

# ଔପନ୍ୟାସିକ କାଳିନ୍ଦୀଚରଣ

କାଳିନ୍ଦୀଚରଣ ଜଣେ ବିଶିଷ୍ଟ କଥାଶିଳ୍ପୀ ଯାହାଙ୍କର ଉଭୟ ଗଳ୍ପ ଏବଂ ଉପନ୍ୟାସ ସମଗ୍ର ଓଡ଼ିଆ ସାହିତ୍ୟରେ ବିଶେଷ ସ୍ୱୀକୃତି ଲାଭ କରିଛି । ଓଡ଼ିଆ ଗଳ୍ପଧାରାରେ କାଳିନ୍ଦୀଚରଣଙ୍କ 'ମାଂସର ବିଳାପ' ଗଳ୍ପଟି ଯେପରି ଅନନ୍ୟ, ଓଡ଼ିଆ ଉପନ୍ୟାସ ଧାରାରେ ତାଙ୍କର 'ମାଟିର ମଣିଷ' ଉପନ୍ୟାସଟି ସେହିପରି ଅନୁପମ । ୧୯୩୧ ମସିହାରେ କାଳିନ୍ଦୀଚରଣଙ୍କ ପ୍ରସିଦ୍ଧ 'ମାଟିର ମଣିଷ' ଉପନ୍ୟାସ ପ୍ରକାଶିତ ହୁଏ । ମାଟିର ମଣିଷ ଉପନ୍ୟାସ ବ୍ୟତୀତ କାଳିନ୍ଦୀଚରଣଙ୍କ ଆହୁରି ଚାରିଖଣ୍ଡ ଉପନ୍ୟାସ ପ୍ରକାଶିତ ହୋଇଥିଲା । ସେଗୁଡ଼ିକ ହେଲା 'ଅମର ଚିତା' (୧୯୩୩), ମୁକ୍ତା ଗଡ଼ର କ୍ଷୁଧା (୧୯୩୨), ଲୁହାର ମଣିଷ (୧୯୪୭), ଆଜିର ମଣିଷ (୧୯୫୭) ।

କାଳିନ୍ଦୀଚରଣଙ୍କ ଉପନ୍ୟାସସବୁ ଭାରତୀୟ ଜାତୀୟ ଆନ୍ଦୋଳନ ତଥା ସାମାଜିକ ଜାଗରଣ ପରିପ୍ରେକ୍ଷୀରେ ଓଡ଼ିଆ ଯୌଥ ପରିବାରକୁ ଚିତ୍ରଣ କରିଛି । ଓଡ଼ିଶାର ଗତ ଶହେ ବର୍ଷର ରାଜନୀତିକ, ସାମାଜିକ ତଥା ସାଂସ୍କୃତିକ ଜୀବନର ଚିତ୍ର ତାଙ୍କ ଉପନ୍ୟାସରେ ପ୍ରକଟିତ ହୋଇଛି । ଭାରତୀୟ ମୁକ୍ତି ଆନ୍ଦୋଳନ, କୃଷିଭିତ୍ତିକ ଓଡ଼ିଶାର ସାମାଜିକ ଜୀବନ, ଗଡ଼ଜାତ ଶାସନ ବ୍ୟବସ୍ଥାର କିଛି ଶୋଷଣ ଅତ୍ୟାଚାରର ଚିତ୍ର ସହିତ ଓଡ଼ିଶାର ଦୁର୍ଭିକ୍ଷ ଓ ତଦାନୀନ୍ତନ ପ୍ରଶାସନ ବିଷୟ କାଳିନ୍ଦୀଚରଣଙ୍କ ଉପନ୍ୟାସରେ ବର୍ଣ୍ଣିତ ପ୍ରସଙ୍ଗ ।

ବହୁକାଳ ପର୍ଯ୍ୟନ୍ତ ଓଡ଼ିଶାରେ ନିଛକ ଜୀବନନିଷ୍ଠ ତଥା ବାସ୍ତବ ସାମାଜିକ ସମସ୍ୟାକୁ ନେଇ ଉପନ୍ୟାସ ପ୍ରାୟ ରଚନା କରାଯାଇ ନଥିଲା; ଯଦିଓ ଭିକ୍ଟୋରିଆନ ଯୁଗୀୟ କିଛି ନୀତି ଓ ଆଦର୍ଶବୋଧ ଥାଇ ଫକିରମୋହନଙ୍କ 'ମାମୁଁ' ଓ 'ଛ'ମାଣ ଆଠଗୁଣ୍ଠ' ଓଡ଼ିଆ ସାହିତ୍ୟରେ ରଚିତ ହୋଇସାରିଥିଲା ।

କାଳିନ୍ଦୀଚରଣଙ୍କ 'ମାଟିର ମଣିଷ' ଉପନ୍ୟାସ ସମୟ ଓ ସମାଜର ପୁଣି ମଣିଷ ଆତ୍ମାର ଯେଉଁ ସଂକେତ ବହନ କରିଛି, ସେ ଦୃଷ୍ଟିରୁ ତାକୁ ଏକ ମହାକାବ୍ୟିକ ଉପନ୍ୟାସ ବୋଲି ବର୍ଣ୍ଣନା କରାଯାଇପାରେ । ଜାତୀୟ ଆନ୍ଦୋଳନର ଭାବାଦର୍ଶ ଉପରେ ଉପନ୍ୟାସଟିର ପତନ ହୋଇଥିଲେ ହେଁ ମଣିଷର ସୁଖ, ଦୁଃଖ, ସ୍ନେହ, ପ୍ରେମ, ବୈରତା, ଈର୍ଷା ଆଦି ମନସ୍ତାତ୍ତ୍ୱିକ ଓ ନୈତିକ ଭାବାବେଗ ଏହି ଉପନ୍ୟାସର ବିଷୟପିଣ୍ଡରେ ପ୍ରତୀକିତ ହୋଇଛି । ଉପନ୍ୟାସଟି କମ୍ ବେଶୀରେ ଗାନ୍ଧିଙ୍କ ସ୍ୱପ୍ନ ଆଦର୍ଶ, ଅହିଂସା, ଐକ୍ୟ ଓ ସତ୍ୟାଗ୍ରହର ଭାବଚେତନାକୁ ଏକ ସୁନ୍ଦର ପାରିବାରିକ କାହାଣୀ ଭିତରେ ପ୍ରକଟିତ କରିଛି ।

କାଳିନ୍ଦୀଚରଣ ମୁଖ୍ୟତଃ ଥିଲେ ଜଣେ ଜୀବନଧର୍ମୀ କଥାଶିଳ୍ପୀ । ତାଙ୍କ ଉପନ୍ୟାସରେ ତାଙ୍କର ମାନବୀୟ ଦୃଷ୍ଟିଭଙ୍ଗୀ ଓ ସମ୍ବେଦନଶୀଳତା ଚିତ୍ର ଓ ଚରିତ୍ର ଜରିଆରେ ପ୍ରକଟିତ ହୋଇଛି । ଏତଦ୍‌ଭିନ୍ନ ମାଟିର ମଣିଷ ଉପନ୍ୟାସ ପଲ୍ଲୀ ଜୀବନର ଏକ ନିଖୁଣ ଚିତ୍ର । କବି କାଳିନ୍ଦୀଚରଣଙ୍କ ପରି ଜଣେ ଭାବବାଦୀ ଶିଳ୍ପୀ ମାଟିର ମଣିଷର ଦ୍ୱନ୍ଦ୍ୱ ଓ ବିଷୟବିନ୍ୟାସକୁ ଏତେ ମାର୍ମିକ କରି ଉପସ୍ଥାପନ କରିପାରିଛନ୍ତି ।

ସମଗ୍ର ଓଡ଼ିଆ ସାହିତ୍ୟର ଧାରାରେ ପୂର୍ବରୁ ସୂଚିତ ହୋଇଛି ଯେ, ମାଟିର ମଣିଷ ଉପନ୍ୟାସ ଏକ ଚମତ୍କାର ମାନବୀୟ ଭାବ ସମ୍ପର୍କ ଓ ସମ୍ବନ୍ଧଭିତ୍ତିକ ଉପନ୍ୟାସ । ମାଟିର ମଣିଷର କାହାଣୀ- ପିଣ୍ଡଟି ଭାରି ଆପଣାର ମନେହୁଏ ଓ ପାଠକର ପରିଚିତ ଅନୁଭୂତିକୁ ଛୁଏଁ । ଶାମ ପଧାନର ବଡ଼ପୁଅ ବରଜୁ ପଧାନ ଓ ସାନପୁଅ ଛକଡ଼ି, ବରଜୁ ପଧାନର ସ୍ତ୍ରୀ ହାରାବୋଉ ତା'ର ପୁଅଝିଅ, ଛକଡ଼ିର ସ୍ତ୍ରୀ ନେତ୍ରମଣି, ଶ୍ୟାମବନ୍ଧୁ ପରିବାର । ବୁଢ଼ା ମଲାବେଳେ ବଡ଼ପୁଅ ବରଜୁ ପଧାନକୁ ସାନପୁଅକୁ ଦେଖାଚାହିଁ କରିବା ପାଇଁ କହିଯାଇଥିଲା ଓ ସେ ଯେପରି ଜମିକୁ ଓ ଘରକୁ ଭାଗ ଭାଗ ନ କରେ ସେମିତି ଅନୁରୋଧଟିଏ ମଧ୍ୟ କରିଥିଲା । ବରଜୁ ବୁଢ଼ା ବାପର ଏହି ଶେଷ ଅନୁରୋଧକୁ ନିଜ ଜୀବନରେ ପାଳନ କରିଥିଲା । ଗାଁରେ ଘରେ ଭାଇ ଭାଇ ମଧ୍ୟରେ ଯେପରି ଜମିବାଡ଼ିକୁ ନେଇ କଳି ଉପୁଜେ ସେହିପରି କଳି ଉପୁଜାଇଛନ୍ତି ସାନଭାଇ ଛକଡ଼ି ଓ ତା' ସ୍ତ୍ରୀ ନେତ୍ରମଣି । ନେତ୍ରମଣି ହାରାବୋଉକୁ ଆଦୌ ସହିପାରିନାହିଁ ; ଅଥଚ ଛକଡ଼ି ଏଥିରେ ସାଧମତେ ମୌନ ହୋଇ ରହୁଛି । ଛକଡ଼ିର ନୀରବତା ଦେଖି ନେତ୍ରମଣି ଆହୁରି ବିଚଳିତ ହୋଇ ପଡ଼ିଛି ।

ଅନ୍ୟ ପକ୍ଷରେ ସେ ଗାଁଆର ଦୁଷ୍ଟ ଚରିତ୍ର ଚକ୍ରାନ୍ତକାରୀ ହରି ମିଶ୍ର ବରଜୁ ପଧାନର ସୁନ୍ଦର ପରିବାରଟିକୁ ଭାଙ୍ଗିଦେବା ପାଇଁ ଷଡ଼ଯନ୍ତ୍ର କରିଛି । ସେ ଛକଡ଼ିକୁ ଆଣି ବରଜୁ ବିରୋଧରେ କୁପରାମର୍ଶ ଦେଇଛି । ବଡ଼ଭାଇ ବରଜୁ ପଧାନ ପ୍ରତି ତଥା ତା'ର ପୁତୁରା ଝିଆରୀମାନଙ୍କ ପ୍ରତି ତା' ଅନ୍ତରର ସ୍ନେହ ଶ୍ରଦ୍ଧା ଥିବା ସତ୍ତ୍ୱେ ଛକଡ଼ି ତା' ବଡ଼ ଭାଇଠାରୁ ତା' ସମ୍ପତ୍ତିର ଜମିଭାଗ ମାଗିଛି । ବଡ଼ଭାଇ ବରଜୁ ଛକଡ଼ିର ଏ ଆଚରଣରେ ଅସହାୟ ହୋଇପଡ଼ିଛି ଓ ଶେଷରେ ସ୍ୱର୍ଗତ ପିତାଙ୍କ କଥାରଖି ବରଜୁ ଜମିକୁ ଓ ଘରକୁ ବି ଭାଗ ନକରି ସବୁକୁ ଛକଡ଼ିକୁ ଦେଇ ଗାଁ ଛାଡ଼ି ଚାଲିଯାଇଛି । ବରଜୁର ଏହି ଘର ଛାଡ଼ିବା ଘଟଣା ଉପନ୍ୟାସଟିକୁ ବହୁ ମହତ୍ତ୍ୱ ଆଣିଦେଇଛି । ଉପନ୍ୟାସରେ ଏପରି ପରିସମାପ୍ତି ଜୀବନ ବିଷୟରେ ଖୁବ୍ ଉଦାର ଦୃଷ୍ଟିଭଙ୍ଗୀର ଅପେକ୍ଷା ରଖେ । ଉପନିଷଦର ତ୍ୟାଗ ଦର୍ଶନ ଓ ମଣିଷର ମହତ୍ତ୍ୱ ପ୍ରତିଷ୍ଠା ଓ ସୁଖଭୋଗ ପାଇଁ ଏହି ପନ୍ଥା ହିଁ ଉତ୍କୃଷ୍ଟ ବୋଲି କହିଛି ।

ଗାନ୍ଧିବାଦୀ ଆଦର୍ଶ ହୁଏତ କାଳିନ୍ଦୀଚରଣଙ୍କ ଶିଳ୍ପୀମାନସକୁ ଯଥେଷ୍ଟ ଭାବରେ ପ୍ରଭାବିତ କରିଛି, ସେଥିପାଇଁ ଗ୍ରାମାଞ୍ଚଳର ଏକ ନିଷ୍କପଟ ଚାଷୀ ବରଜୁ ପଧାନ ଏଇଭଳି ତ୍ୟାଗ ଓ ଉତ୍ସର୍ଗର ଦୃଷ୍ଟାନ୍ତ ସୃଷ୍ଟି କରିପାରିଛି ।

'ମାଟିର ମଣିଷ' ଉପନ୍ୟାସ ଯେତେବେଳେ ୧୯୩୧ରେ ପ୍ରକାଶିତ ହୋଇଛି ସେତେବେଳେ ତା'ର ମାତ୍ର ପାଞ୍ଚବର୍ଷ ପରେ ୧୯୩୬ରେ ହିନ୍ଦୀ ଔପନ୍ୟାସିକ ପ୍ରେମଚନ୍ଦଙ୍କର ଗୋଦାନ ଉପନ୍ୟାସ ପ୍ରକାଶିତ ହୋଇଛି । 'ମାଟିର ମଣିଷ' ଉପନ୍ୟାସ ଗୋଟିଏ ପ୍ରକାରର ସାମାଜିକ ବିପ୍ଳବର ବାର୍ତ୍ତାପ୍ରଚାର କରିଛି । ଜଣେ ସଂସାରୀ ମଧ୍ୟ ସନ୍ନ୍ୟାସୀ ପରି ବିଷୟ ପ୍ରତି ଅନାସକ୍ତ ହୋଇପାରେ । ଏହି ବିଷୟପ୍ରତି ଆସକ୍ତି ହିଁ ଆମ ଭିତରେ ସଂଘର୍ଷ ଓ ତିକ୍ତତାର କାରଣ । ଆମେ ବିଷୟଭୋଗ କରୁଁ । କିନ୍ତୁ ବିଷୟପ୍ରତି ଅତ୍ୟଧିକ ଆସକ୍ତି ଆମକୁ ମୋହଗ୍ରସ୍ତ

ଓ ସ୍ନେହ ମମତା ପ୍ରତି ଅନ୍ଧ କରିଦିଏ । ସୁନ୍ଦର ପାରିବାରିକ ଜୀବନ ଯେଉଁ ତ୍ୟାଗ, ସ୍ନେହଶୀଳତା ଉପରେ ନିର୍ଭର କରେ ସେହି ତ୍ୟାଗ ଓ ସ୍ନେହଶୀଳତାକୁ ବରଜୁ ଚରିତ୍ର ଜରିଆରେ ପ୍ରଦର୍ଶନ କରି କାଳିନ୍ଦୀଚରଣ ମାଟିର ମଣିଷ ଉପନ୍ୟାସକୁ ଏକ ଆଦର୍ଶ ଓ ମୂଲ୍ୟବୋଧର ଆଲେଖ୍ୟ କରିପାରିଛନ୍ତି । ମାଟିର ମଣିଷ ଉପନ୍ୟାସ ଏବେ ଓଡ଼ିଆ ଚଳଚ୍ଚିତ୍ରରେ ପ୍ରଦର୍ଶିତ ହୋଇଛି ଓ ତା'ର ଲୋକପ୍ରିୟତାର ପଟାନ୍ତର ନାହିଁ । ଓଡ଼ିଶାର ସାଧାରଣ ପାଠକ ଏହି ମାଟିର ମଣିଷ ଉପନ୍ୟାସ ଓ ମାଂସର ବିଳାପ ଗଳ୍ପ ଜରିଆରେ ହିଁ କାଳିନ୍ଦୀଚରଣଙ୍କୁ ଚିହ୍ନିଛି ଓ ମନେରଖିଛି ।

କେବଳ ଐକ୍ୟ ଓ ଅହିଂସା ପରି ଗାନ୍ଧିଙ୍କ ଆଦର୍ଶର ରୂପାୟନ ନୁହେଁ, ଗୋଟିଏ ଏକାନ୍ନବର୍ତ୍ତୀ ଯୌଥ ପରିବାରର ଆତ୍ମିକ ଜୀବନକୁ ମଧ୍ୟ କାଳିନ୍ଦୀଚରଣ ତାଙ୍କ ମାଟିର ମଣିଷ ଉପନ୍ୟାସରେ ସଫଳ ଭାବେ ଚିତ୍ରଣ କରିଛନ୍ତି । ଉପନ୍ୟାସଟି ସେ ଦୃଷ୍ଟିରୁ ବେଶ୍ ମନସ୍ତାତ୍ତ୍ୱିକ ହୋଇଛି ମଧ୍ୟ । ସବୁକାଳର ନାରୀ ଯେପରି ଗୋଟିଏ ଏକାନ୍ତ ଛୋଟ ପରିବାରର ସ୍ୱପ୍ନ ଦେଖିଥାଏ ନେତ୍ରମଣି ତା'ର ତରୁଣ ସ୍ୱାମୀ ଛକଡ଼ିକୁ ନେଇ ଅବିକଳ ସେଇ ସ୍ୱପ୍ନ ହିଁ ଦେଖିଛି । ଗୋଟିଏ ଗ୍ରାମ୍ୟବଧୂର ଆନ୍ତରିକ ସ୍ୱପ୍ନଟିଏ ଅନ୍ୟ ପକ୍ଷରେ ସୁନ୍ଦର ଏକ ଯୌଥ ପରିବାରକୁ କିପରି ବିପର୍ଯ୍ୟସ୍ତ କରିଛି, ତାହା ହିଁ ସାମଗ୍ରିକ ଭାବେ ମାଟିର ମଣିଷ ଉପନ୍ୟାସର ବିଷୟବସ୍ତୁ । କିଛି ସାମାଜିକ ଜାଗରଣର ଅନୁଚିନ୍ତା କିଛି ମାର୍କସବାଦୀ, ମାନବତାବାଦୀ ତଥା ଗାନ୍ଧିବାଦୀ ଆଦର୍ଶର ପ୍ରଭାବ ମାଟିର ମଣିଷ ଉପନ୍ୟାସରେ ପଡ଼ିପାରିଥାଏ; ପଡ଼ିବା ପରି ମନେ ହେଉଛି ପ୍ରାୟ । କାଳିନ୍ଦୀଚରଣ ସମଗ୍ର ଭାରତବର୍ଷର ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ପରିପ୍ରେକ୍ଷୀରେ ଭାରତୀୟ ସମାଜ ଜୀବନର ପ୍ରଗତି ବିଷୟ ନେଇ ଚିନ୍ତା କରିଛନ୍ତି ଓ ତାହାକୁ ତାଙ୍କ ମାଟିର ମଣିଷ ଉପନ୍ୟାସରେ ଯେପରି ଚିତ୍ର ରୂପ ଦେଇଛନ୍ତି ।

'ମାଟିର ମଣିଷ' ଉପନ୍ୟାସର ହରି ମିଶ୍ର ଚରିତ୍ରଟି ମଧ୍ୟ ଖୁବ୍ ଜୀବନ୍ତ ହୋଇପାରିଛି । ଗୋଟିଏ ଖଳନାୟକ କେତେ ଈର୍ଷାନ୍ୱିତ ହୋଇପାରେ ଓ ଅକଲ୍ୟାଣକର ଷଡ଼ଯନ୍ତ୍ରରେ ଲିପ୍ତ ହୋଇପାରେ ଔପନ୍ୟାସିକ କାଳିନ୍ଦୀଚରଣ ଓଡ଼ିଆ ସାହିତ୍ୟର ଦୁଷ୍ଟ ଚରିତ୍ର ଚିତ୍ରଣ ପରମ୍ପରାରେ ହରି ମିଶ୍ରର ଚରିତ୍ର ଚିତ୍ରଣ କରି ଦେଖାଇଛନ୍ତି । ଏହି ଚରିତ୍ରଟି ପାଇଁ 'ମାଟିର ମଣିଷ' ଉପନ୍ୟାସ ପାଠକ-ପାଠିକାମାନଙ୍କ ପାଇଁ ଆହୁରି ଆକର୍ଷଣୀୟ ହୋଇ ପାରିଛି । ଆମେ ଫକିରମୋହନଙ୍କ ସମେତ ଏକାନ୍ତ ଜୀବନନିଷ୍ଠ ବାସ୍ତବବାଦୀ ଉପନ୍ୟାସର ଦୁଷ୍ଟ ଚରିତ୍ରଗୁଡ଼ିକୁ ଲକ୍ଷ୍ୟ କଲେ ବିଶିଷ୍ଟ କଥାଶିଳ୍ପୀମାନେ ଏହି ଦୁଷ୍ଟ ଚରିତ୍ରକୁ ଅଧିକ ଜୀବନ୍ତ କରି ଚିତ୍ରଣ କରିଥିବାର ଜଣାପଡ଼େ ।

ମନ୍ଦକୁ ଯେଉଁ ଶିଳ୍ପୀ ଯେତେ ଅଧିକ ଚିତ୍ରଣ କରିପାରେ ସେ ହିଁ ଜୀବନର ସାଧୁତାକୁ ସେତିକି ପ୍ରତିପାଦନ କରିପାରେ । ଏହା ହିଁ ଅନେକ ବଡ଼ ଶିଳ୍ପୀଙ୍କ ଚିତ୍ର ଓ ଚରିତ୍ର ଚିତ୍ରଣରେ ପରିଲକ୍ଷିତ ହୁଏ । ଦସ୍ତୋଭସ୍କି ତାଙ୍କ ଉପନ୍ୟାସମାନଙ୍କରେ ମଣିଷର ସାଧୁତା ଓ ସଇତାନିକୁ ସମଭାବରେ ଚିତ୍ରଣ କରିଛନ୍ତି । କାଳିନ୍ଦୀଚରଣ ହରି ମିଶ୍ର ଚରିତ୍ରଟିକୁ ଏପରି ଜୀବନ୍ତ କରି ଚିତ୍ରଣ କରିଛନ୍ତି ଯେ, ଓଡ଼ିଆ ସାହିତ୍ୟର ଖଳ ଓ ଦୁଷ୍ଟ ଚରିତ୍ର ଚିତ୍ରଣ ପରମ୍ପରାରେ ହରି ମିଶ୍ର

ଚରିତ୍ରଟି ସେ ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ । ପାଠକ ମନରେ ମାଟିର ମଣିଷ ଉପନ୍ୟାସରେ ଏହି ହରି ମିଶ୍ର ଚରିତ୍ରଟି ଅଧିକ ଘୃଣା ସଂଚାରିତ କରିଥାଏ । ଏହାହିଁ ଖଳ ଚରିତ୍ର ଚିତ୍ରଣ ସଫଳତାର ମାପକାଠି ।

କାଳିନ୍ଦୀଚରଣଙ୍କ 'ମାଟିର ମଣିଷ' ଉପନ୍ୟାସର ଚରିତ୍ରଗୁଡ଼ିକ ଏତେ ବାସ୍ତବ ଓ ଜୀବନ୍ତ ହୋଇଛି ଯେ ପରବର୍ତ୍ତୀ ବହୁ ସାହିତ୍ୟ ଛାତ୍ର ଓ ସମାଲୋଚକ ମାଟିର ମଣିଷ ଉପନ୍ୟାସର ଚରିତ୍ରଗୁଡ଼ିକୁ ଅଧିକ ଆଗ୍ରହ ଦେଇ ବହୁ ଦୃଷ୍ଟିରୁ ଅନୁଶୀଳନ କରିଛନ୍ତି । ଓଡ଼ିଶାର ଅନ୍ୟତମ ବିଶିଷ୍ଟ ସମାଲୋଚକ ନଟବର ସାମନ୍ତରାୟଙ୍କ 'ନେତ୍ରମଣିର ଡାଇରୀ' ଉଲ୍ଲିଖିତ ଅନୁଶୀଳନର ଏକ ଦୃଷ୍ଟାନ୍ତ ।

'ମାଟିର ମଣିଷ' ଉପନ୍ୟାସର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ଓଡ଼ିଶାର ନିଛକ ଏକ ଯୌଥ ପରିବାରକୁ ଚିତ୍ରଣ କରିବା । ଏହି ଚିତ୍ରଣ ଏତେ ମର୍ମସ୍ପର୍ଶୀ ହୋଇଛି ଯେ ଜଣେ ଭାବବାଦୀ ପାଠକ 'ମାଟିର ମଣିଷ' ଉପନ୍ୟାସ ପଢୁଥିଲା ବେଳେ ପାରିବାରିକ ଜୀବନର ଆତ୍ମୀୟତାକୁ ଗଭୀର ଭାବେ ଅନୁଭବ କରେ । ଆମ ପରିବାରର ଭାଇ ଭାଇ ମଧ୍ୟରେ ସ୍ନେହ ବିଶ୍ୱାସ, ସାନଭାଇର ବଡ଼ ଭାଇ ପ୍ରତି ଭକ୍ତି ଓ ମାନ୍ୟତା, ବଡ଼ ଭାଇର ମୁରବି ପଣିଆ ଓ ସାନଭାଇ ପ୍ରତି ତା'ର ନିଷ୍କପଟ ସ୍ନେହଶୀଳତା । ଗ୍ରାମ୍ୟ ରସିକତା ଓ ସରଳତାର ଏକ ନିରୀହ ଚରିତ୍ର ଛକଡ଼ି । ଅଳିଅଳ ପୁତୁରା ଝିଅାରୀଙ୍କ ଦାଦା ସେ । ସେମାନଙ୍କ ପ୍ରତି ଦାଦାର ଅନେକ କିଛି ସ୍ନେହଶୀଳ ଭାବନା । ଏସବୁର ଖୁବ୍ ପ୍ରାଣସ୍ପର୍ଶୀ ବର୍ଣ୍ଣନା । ଉପକୂଳ ଅଂଚଳର କଥିତ ଭାଷା ଭିତରେ ଔପନ୍ୟାସିକ କାଳିନ୍ଦୀଚରଣ ଖୁବ୍ ସୁଚାରୁରୂପେ ସଂପାଦନ କରିଛନ୍ତି ।

ମାଟିର ମଣିଷ ଉପନ୍ୟାସର ବ୍ୟବହୃତ ଭାଷା ଫକିରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ରେ ବ୍ୟବହୃତ ଜାନପଦିକ ଭାଷାକୁ ସ୍ମରଣକୁ ଆଣେ । କାଳିନ୍ଦୀଚରଣ 'ମାଟିର ମଣିଷ'ର ସମଗ୍ର ପରିବେଶ ବର୍ଣ୍ଣନାରେ ଯଥାସମ୍ଭବ ଅତି ଜୀବନ୍ତ ଲୌକିକ ଭାଷା ବ୍ୟବହାର କରିଛନ୍ତି ଏବଂ ତାଙ୍କର ଏହି ଭାଷାଶୈଳୀ ଫକିରମୋହନଙ୍କ ଭାଷାଶୈଳୀ ଅପେକ୍ଷା ଅଧିକ କୋମଳ ଓ ସଂବେଦନଶୀଳ ।

ବରଜୁ ଓ ଛକଡ଼ି ପାଠକ ମନରେ ରାମ ଲକ୍ଷ୍ମଣଙ୍କ କଥା ସ୍ମରଣ କରାଇଦିଏ । ଗୋଟିଏ ମହାକାବ୍ୟର ଭାବଗତ ପ୍ରଭାବ ଭିତରେ ଗୋଟିଏ ଜାତିର ଆତ୍ମା ଏତେ ପୁଷ୍ଟ ହୋଇଥାଏ ଓ କୋଟି କୋଟି ମଣିଷଙ୍କ ଅନ୍ତର ସେଥିରେ ଏପରି ସିକ୍ତ ହୋଇଥାଏ ଯେ ପରବର୍ତ୍ତୀ ଚିତ୍ର ଚରିତ୍ର ଗୁଡ଼ିକୁ ସେ ସେହି ପରିପ୍ରେକ୍ଷୀରେ ଦେଖେ । ବରଜୁ ଚରିତ୍ର ଭିତରେ ଜଣେ ପାଠକ ଅବଶ୍ୟ ଗାନ୍ଧିବାଦୀ ଆଦର୍ଶକୁ ଲକ୍ଷ୍ୟକରେ । ଗୋଟିଏ ତ୍ୟାଗପୂତ ଆଦର୍ଶ ବା ମୂଲ୍ୟବୋଧକୁ ଜଣେ ଶିଳ୍ପୀ ଏତେ ଚମତ୍କାର ଭାବରେ ଚରିତ୍ର ଚିତ୍ରଣ ଭିତରେ ପ୍ରତୀକିତ କରିଛନ୍ତି ଯେ, ବରଜୁ ଚରିତ୍ରଟିକୁ ଲକ୍ଷ୍ୟ କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଅବଶ୍ୟ ସ୍ୱାଭାବିକତା ଦୃଷ୍ଟିରୁ କେହି କେହି ସାହିତ୍ୟ ସମାଲୋଚକ ବରଜୁକୁ ଏକ ବାସ୍ତବ ଜୀବନର ଆଲେଖ୍ୟ ବୋଲି ଜ୍ଞାନ ନକରି ଅଧିକ ଆଦର୍ଶାୟିତ ଚରିତ୍ର ବୋଲି ମନେ କରନ୍ତି । ସେକାଳର ପ୍ରେମଚନ୍ଦ ପ୍ରମୁଖ

ଭାରତୀୟ ଲେଖକମାନେ ମଧ୍ୟ ଗାନ୍ଧିଜୀଙ୍କ ସାମାଜିକ ଜାଗରଣ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମକୁ ସେମାନଙ୍କ ଗଳ୍ପ ଉପନ୍ୟାସରେ ନାନା ଭାବରେ ଚିତ୍ରଣ କରିଛନ୍ତି ଏବଂ ତଦନୁଯାୟୀ ଚରିତ୍ରମାନ ସୃଷ୍ଟି କରିଛନ୍ତି ।

ପ୍ରେମଚନ୍ଦଙ୍କ 'ପ୍ରେମାଶ୍ରମ', 'ସେବାସଦନ', 'ରଙ୍ଗଭୂମି' ତଥା 'ଗୋଦାନ' ପ୍ରଭୃତି ଉପନ୍ୟାସରେ ଗଣଜୀବନର ରୂପାୟନ ଦେଖିବାକୁ ମିଳେ ; ଯେଉଁଥିରେ ସମାଜ ସଂସ୍କାରର ପ୍ରୟାସକୁ ଲକ୍ଷ୍ୟ କରାଯାଇପାରେ । କାଳିନ୍ଦୀଚରଣ 'ମାଟିର ମଣିଷ' ଉପନ୍ୟାସରେ 'ମାଟିର ମଣିଷ'କୁ କେନ୍ଦ୍ରକରି ତା'ର ସମସ୍ତ ପରିବେଶ ଓ ତା' ଜୀବନର ସର୍ବବିଧ ସଂଗ୍ରାମକୁ ବର୍ଣ୍ଣନା କରିଛନ୍ତି ତା'ର ଅର୍ଥନୈତିକ ସଂଗ୍ରାମଠାରୁ ନୈତିକ ସଂଗ୍ରାମ ପର୍ଯ୍ୟନ୍ତ ।

ଇଂରେଜୀ ଔପନ୍ୟାସିକ ଥମାସ ହାର୍ଡ଼ି ତଥା ମିଖାଇଲ ସୋଲକୋଭଙ୍କ ପରି କେତେକ ସମାଜବାଦୀ ଆଦର୍ଶର ଔପନ୍ୟାସିକ ଯେପରି ଦୂରପ୍ରାନ୍ତୀୟ ପଲ୍ଲୀକୁ ଲିପିବଦ୍ଧ କରିଛନ୍ତି କାଳିନ୍ଦୀଚରଣ ମଧ୍ୟ ସେହିପରି ଗ୍ରାମାଞ୍ଚଳର ଅକୃତ୍ରିମ ଜୀବନକୁ ନିଖୁଣ ଭାବରେ ଚିତ୍ରଣ କରିଛନ୍ତି ।

ସେ ଲେଖିଛନ୍ତି - 'ଏଇ ଧାନଗଛ ମୂଳେ ନଇଁ ପଡ଼ିଥିବା କଳା କଳା ଜନ୍ତୁଗୁଡ଼ିକଙ୍କର କୁଆଡ଼କୁ ନଜର ନାହିଁ । ସେ ବି ଯେମିତି ଏହି ବିଲବାରି ଚଢ଼େଇଙ୍କ ପରି ଏହି ସୂର୍ଯ୍ୟ ଆକାଶ ପରି ନିତି ଦିନିଆ ପୁରୁଣା । ଖରା ନାହିଁ, ବର୍ଷା ନାହିଁ, ଶୀତ ନାହିଁ, ବାରମାସ, ଛଅଋତୁ, ତିନିଶ ପଇଁଷଠି ଦିନ, ଏହି ଏକା ଭାବରେ ସେ ଚାଲିଛନ୍ତି । କାଳ କାଳ ବିତିଗଲାଣି, ଆଜିଯାଏ ସେ ଦିହପାଇଁ ଖଣ୍ଡେ ବସ୍ତ୍ର ମିଳିଲା ନାହିଁ । ଘୋଡ଼େଇ ଦେବାକୁ ଛ'ହାତି ଗାମୁଛା ଆଠହାତ ହୋଇ ପାରିଲା ନାହିଁ । ସେଥିପାଇଁ ସେ ମଣିଷ ନୁହଁନ୍ତି ଜନ୍ତୁ । ଖାଲି ମାଟି, ମାଟି - ମାଟି ତାଙ୍କର ବେଉସା ଜନମଠାରୁ ମରଣଯାଏ । ମାଟିରେ ଜନମ, ମାଟିରେ ଶୁଆ, ଉଠା, ବସା, ମାଟିରେ ଘର, ମାଟି ତାଡ଼ି ପେଟ ପୋଷେ ...... ମାଟିର ମଣିଷ ।'

ଭାରତବର୍ଷର ମହିମାନ୍ୱିତ ନିଷ୍କପଟ ଗ୍ରାମ୍ୟଜୀବନର ଏକ ଆଲେଖ୍ୟ ଯେପରି 'ମାଟିର ମଣିଷ' ଉପନ୍ୟାସ । ଗାଁର ମଣିଷ ମାଟିପରି ସର୍ବଂସହା । ସବୁ ଦୁଃଖ ଦୁଃସ୍ଥିତିକୁ ସେ ସହେ । ଦୈନ୍ୟ ସହେ, ଦୁର୍ଭିକ୍ଷ ସହେ, ଗ୍ରୀଷ୍ମ, ବର୍ଷା, ଶୀତକୁ ବି ସହେ, ଅନ୍ୟର କପଟତାକୁ ବି ସହେ । ଶୋଷଣ ଜୁଲମର ଶିକାର ହୁଏ ; ଅଥଚ ସେମାନଙ୍କର ପ୍ରତିହିଂସା ନଥାଏ । ପ୍ରତ୍ୟୁତ୍ତର ବି କିଛି ନଥାଏ । ଔପନ୍ୟାସିକଙ୍କ ଭାଷାରେ - 'ଏମିତି କାଦୁଅ ଚକଟି ପିଠିରେ ଖରାତାପ ସହି ସହି ମଣିଷ ଜାତି ପାଇଁ ଆହାର ବାଢ଼ି ଗଲେଣି' - 'ଆଶା ନାହିଁ ଭାଷା ନାହିଁ - ଆଖି ଥାଉଁ ଥାଉଁ ଦେଖିପାରନ୍ତି ନାହିଁ । କାନ ଥାଉଁ ଥାଉଁ ଶୁଣି ପାରନ୍ତି ନାହିଁ କାଳ ମୂକ, ଅନ୍ଧ, ନିଜ ଦୁଃଖ ନିଜେ ବୁଝନ୍ତି ନାହିଁ । ନିଜ କଥା ନିଜେ କହିପାରନ୍ତି ନାହିଁ ।'

ବିରୂପା ନଈକୂଳର ଅଖ୍ୟାତ ଏକ ଗାଁ ପଧାନପଡ଼ା । ସେଥିରେ ଶାମ ପଧାନର ଘର । ସେଇ ଘରର ଅଭ୍ୟନ୍ତରରେ ଚଷାପୁଅ ବରଜୁର ଯେଉଁ ସ୍ୱପ୍ନ ଆଉ ସୃଜନଶୀଳ ଅଭୀପ୍ସା ରହିଛି ତା'ରି ଭିତରେ ଅହିଂସା ଓ ମାନବିକତାର ମହାନ ଭାଷ୍ୟ ପ୍ରକଟିତ ହୋଇଛି । ଏହି

ମହରର ଆଦର୍ଶ ଓ ମୂଲ୍ୟବୋଧକୁ 'ମାଟିର ମଣିଷ' ଉପନ୍ୟାସ ଉଦ୍‌ଭାସିତ କରିଥିଲେ ହେଁ, ଏହା ପଲ୍ଲୀ ଓ ପଲ୍ଲୀବାସୀର ଏକ କରୁଣ-ମଧୁର ବାସ୍ତବ ଚିତ୍ରପରି ମନେହୁଏ ।

ଗୋଟିଏ ଗାଁ - ତା'ର ବାଲିବିଲ, ତା'ର ନିବିଡ଼ ଦିଗ୍‌ବଳୟ, ତା' ଉପରର ଆକାଶ, ସବୁକିଛି ସହିତ ସେ ଗାଁର ଶାମ ପଧାନର ଘରଟିକୁ କାଳିନ୍ଦୀଚରଣ ଯେଉଁଭାବ ଓ କବିତ୍ୱ ଦେଇ ଲେଖିଛନ୍ତି ତାହା ପୁଣି ଏତେ ବର୍ଣ୍ଣାଢ୍ୟ ହୋଇ ଉଠିଛି ଯେ, ଶେଷରେ ତାହା ଏକ ଚିତ୍ର ମେଢ଼ରେ ପରିଣତ ହୋଇଯାଇଛି । ଏପରି ଉପନ୍ୟାସଟିଏ ପରିକଳ୍ପନା କରିବା ପଛଆଡ଼େ କାଳିନ୍ଦୀଚରଣଙ୍କ ଶିଳ୍ପୀମାନସ ଜୀବନର କେତେକ ମୌଳିକ ବିଷୟ ପ୍ରତି ଅଙ୍ଗୀକାରବଦ୍ଧ ହୋଇଯାଇଛି । ଜଣେ ବିଶିଷ୍ଟ ସମାଲୋଚକ କହିଛନ୍ତି ଯେ, ଜଣେ ଶିଳ୍ପୀ ସବୁକାଳରେ ଏହି ଅପରିଣତ ବାସ୍ତବ ବିଶ୍ୱକୁ ତ୍ରୁଟିରହିତ କରିବାପାଇଁ କଳ୍ପିତ ଜଗତର ଆରୋପଣ କରେ । କାଳିନ୍ଦୀଚରଣଙ୍କ ବରଜୁ ପଧାନ ଚରିତ୍ର ଶିଳ୍ପୀ କାଳିନ୍ଦୀଚରଣଙ୍କ ଏକ ମାନସପୁତ୍ର ଓ ମଣିଷ ତଥା ତା'ର ସମାଜକୁ ଏକ ମହନୀୟ ଶିଖର ଉପରକୁ ତୋଳି ଧରିବା ପାଇଁ ସତେକି ସେ ଏକ ସଂଗ୍ରାମୀ ବୀର ପୁରୁଷ । ବରଜୁ ପଧାନ ସତେକି ପଧାନ ପଡ଼ା ଗ୍ରାମର ଜଣେ ଛୋଟକୋଟର ଅନାମଧେୟ ମହାତ୍ମା ଗାନ୍ଧି ! ଏପରି ମଧ୍ୟ ବୁଝାଯାଇପାରେ ଯେ ବରଜୁ ପଧାନଙ୍କ ମହାନ୍ ବ୍ୟକ୍ତିତ୍ୱରେ ଗାନ୍ଧିଜୀଙ୍କର ସତ୍ୟ ଅହିଂସା ଓ ଲେନୀନଙ୍କର ବିପ୍ଳବ ଉଭୟ କ୍ରିୟାଶୀଳ ।

ଭାରତବର୍ଷର ଯେ କୌଣସି ଯୌଥ ପରିବାରର ଏକ ଜୀବନ୍ତ ଆଲେଖ୍ୟ ହେଉଛି କାଳିନ୍ଦୀଚରଣଙ୍କ 'ମାଟିର ମଣିଷ' ଉପନ୍ୟାସ । ଭାଇ ଭାଇ ଭିତରେ ଏକାତ୍ମବୋଧ ପୁଣି ଭାଇକୁ ଭଗାରି କରିବାରେ ହରି ମିଶ୍ର ପରି ଖଳଲୋକମାନଙ୍କ ଈର୍ଷା ଓ ଷଡ଼ଯନ୍ତ୍ର, ଯାଆ ଯାଆ ମଧ୍ୟରେ ସାଂସାରିକ କାରଣରୁ ବୈରତା ଓ ତଦ୍‌ଜନିତ ଅସଦ୍‌ଭାବ । ଘରର ଅର୍ଥନୈତିକ ଅସ୍ୱଚ୍ଛଳତା ପରି ଜାବତୀୟ ସମସ୍ୟା । ନାରୀର କ୍ଷୁଦ୍ର ସଂସାର କରିବା ଜନିତ କିଛି ସଂକୀର୍ଣ୍ଣ ସ୍ୱପ୍ନ । ଏସବୁର ମାର୍ମିକ ଚିତ୍ର ଆଙ୍କିଛନ୍ତି ଔପନ୍ୟାସିକ କାଳିନ୍ଦୀଚରଣ । ଏକ ନିଛକ ଗ୍ରାମ୍ୟ ଜୀବନର ଅନ୍ତରାତ୍ମାକୁ ଲେଖକ ଏହି ଉପନ୍ୟାସଟି ଭିତରେ ଆବିଷ୍କାର କରିଛନ୍ତି ଓ ଜଗାଇ ଦେଇଛନ୍ତି । ଗୋଟିଏ ଦେଶର ନେତା ଭଳି, ଗୋଟିଏ ଯୌଥ ପରିବାରର ମୁରବି ଭିତରେ ବି ଏକ ସମୁନ୍ନତ ମାନବୀୟ ଗୁଣ ରହିଥିବା ନିତାନ୍ତ ଆବଶ୍ୟକ । ସେ ବାପ ହେଉ କି ବଡ଼ ଭାଇ ହେଉ, ଏହି ମଣିଷପଣିଆ ଯୋଗୁଁ ଘରର ଆଉ ସବୁ କନିଷ୍ଠମାନେ ତାଙ୍କୁ ମୁରବି ଜ୍ଞାନ କରିଥାନ୍ତି । ଶାମ ପଧାନର ପୁଅ ବରଜୁ ପଧାନ ସାରା ପରିବାରର ମୁରବି ହୋଇଛି, ତା' ଅନ୍ତର୍ନିହିତ ସତ୍ୟାନୁରାଗ ପାଇଁ ସ୍ନେହ ପ୍ରେମ ଓ ତ୍ୟାଗ ପାଇଁ । ନିଜ ସ୍ତ୍ରୀ ହାରା ବୋଉର ଦୁଃଖ ଅପମାନକୁ ବୁଝିବାକୁ ଯାଇ ସେ ନିଜର ସାନଭାଇ ଛକଡ଼ି ପ୍ରତି ଅନୁଦାର ହୋଇନାହିଁ । କିଂବା ଛକଡ଼ିପ୍ରତି ମଧ୍ୟ ଅଧିକ ସହିଷ୍ଣୁ ଓ ଉଦାର ହେବାର ଆଦର୍ଶରେ ନିଜର ବିବାହିତା ପତ୍ନୀ ପ୍ରତି ନିର୍ଦ୍ଦୟ ହୋଇନାହିଁ । 'ମାଟିର ମଣିଷ' ଉପନ୍ୟାସଟି ବସ୍ତୁତଃ ମନୁଷ୍ୟତାର ଏକ ସମୁଜ୍ଜ୍ୱଳ ଆଲେଖ୍ୟ ; ଯାହାକୁ ପଢ଼ିଲେ ପାଠକ ତା'ର ପରିଚିତ ପାରିବାରିକ ଆତ୍ମୀୟତାକୁ ସ୍ମରଣକୁ ଆଣେ ଓ ସେ ଆତ୍ମବିସ୍ମୃତ ହୋଇଯାଏ ।

ପୁଣି ପଧାନ ଘରର ଚତୁଃପାର୍ଶ୍ୱରେ ଯେଉଁ ଗତିଶୀଳ ସାମାଜିକ ଜୀବନ, ସେଥିପ୍ରତି କାଳିନ୍ଦୀଚରଣଙ୍କର ମଧ ଶିଳ୍ପୀସୁଲଭ ସଚେତନତା ଯଥେଷ୍ଟ ଥିଲା । ସେ ଶାମ ପଧାନ ପରିବାରର ମଣିଷମାନଙ୍କୁ ଯେପରି ମନ ଦେଇ ଦେଖିଛନ୍ତି, ସେହିପରି ଦେଖିଛନ୍ତି ମଧ ତାଙ୍କ ଗ୍ରାମର ଯଦୁ ଦଳେଇ, ଧରମା ଆଦି ଚରିତ୍ର ସବୁକୁ ଶ୍ରଦ୍ଧା ଓ ସହାନୁଭୂତି ଦେଇ ।

ଜଣେ ଶିଳ୍ପୀର ଅସଲ ସୃଜନଶୀଳତା ହେଉଛି ମାନବୀୟ ସମ୍ବେଦନଶୀଳତା ଓ ସଦିଚ୍ଛା । 'ମାଟିର ମଣିଷ' ଉପନ୍ୟାସଟି ସେହି ମାନବୀୟ ସମ୍ବେଗ ଓ ସଦିଚ୍ଛାର ଏକ ମହାକାବ୍ୟ । 'ମାଟିର ମଣିଷ' ମାଟି ଆଉ ମଣିଷକୁ ନେଇ ଚିତ୍ରିତ ଏକ ଆଲେଖ୍ୟ । ନାରୀପୁରୁଷ ନିର୍ବିଶେଷରେ ମଣିଷକୁ ବୁଝିପାରିବାର ପ୍ରୟାସ ଏଠାରେ ଔପନ୍ୟାସିକ କରିଛନ୍ତି । ବରଜୁ ଭାବନାରେ - 'ଏହି ମଣିଷ ଭିତରେ ଭଲଅଛି, ମନ୍ଦ ଅଛି, ଦେବତା ଅଛି, ଅସୁର ଅଛି । ଦୁହିଁଙ୍କ ଭିତରେ ଲଢ଼େଇ ଲାଗିଛି । କେତେବେଳେ ଭଲ ଜିତୁଛି । କେତେବେଳେ ମନ୍ଦ ଜିତୁଛି । ଭଲ ଜିତିଲାବେଳେ ମଣିଷ ଦେବତା ହୋଇ ପୂଜା ପାଉଛି । ଅମର ହୋଇ ରହୁଛି, ଆଉ ଦଶଟିଙ୍କୁ ଭଲ ବାଟରେ ନେଉଛି । ମନ୍ଦ ଜିତିଲା ବେଳେ ମଣିଷ ହୋଇଛି ଚୋର ଖଣ୍ଟ ଡକେଇତ । ଗାଁଗାଁକେ, ଘରଘରକେ ଯେ ମାଲି ମକଦ୍ଦମା କଳିତକରାଳ ଲାଗିଛି, ଏଥିରୁ ଜଣାପଡ଼େ, ସଂସାରରେ ମନ୍ଦ ବଢ଼ି ଯାଇଛି ଅସୁର ବଳ ଦେବତାଠାରୁ ବେଶି ହୋଇ ପଡ଼ିଛି ।

ମାଟିର ମଣିଷ ଉପନ୍ୟାସ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ନିଜେ କାଳିନ୍ଦୀଚରଣ କହିଛନ୍ତି -'ମୋ 'ମାଟିର ମଣିଷ', ସେଥିରେ ତ ମୁଁ ବ୍ରାହ୍ମଣ ଆଉ ଚଷା, ଏହି ଜାତିମାନଙ୍କ ଭିତରେ ଥିବା ଫରକଟାକୁ ଚିତ୍ରିତ କରିଛି । ମୋର ସେହି ଅନୁଭବଗୁଡ଼ାକ ଭିତରୁ ହିଁ 'ମାଟିର ମଣିଷ'ର ସୃଷ୍ଟି । ପିଲାଦିନରୁ ମୋର ବିକ୍ଷୁବ୍ଧ ସ୍ରଷ୍ଟା - ମାନସ ଭିତରେ ଯାହାସବୁ ଗୋଳିଆଘଣ୍ଟା ହୋଇଥିଲା, ସେ ସବୁର ବିସ୍ଫୋରଣ ମୋର 'ମାଟିର ମଣିଷ' । ଗୋଟିଏ ଚଷା ବ୍ରାହ୍ମଣଠାରୁ ଯେ କେତେ ଉଚ୍ଚରେ ସେଇଟାକୁ ମୁଁ ଫୁଟେଇଛି ।'

ମଣିଷ ମଣିଷ ଭିତରେ ସ୍ନେହ ଶ୍ରଦ୍ଧାର ଆଦାନ ପ୍ରଦାନ ମଣିଷର ଆଖିକୁ ବାର ବାର ଅଶ୍ରୁସଜଳ କରିଦେଇଛି । ସେଥିଲାଗି ହରି ମିଶ୍ର ପରି ଖଳ ମଣିଷର କିଛି ଷଡ଼ଯନ୍ତ୍ର ମଧ ପରିଶେଷରେ ମଣିଷକୁ ଅନୁଦାର ଓ ଦୁର୍ବିନୀତ କରିନାହିଁ । ଏହି ଉପଲବ୍ଧି ପ୍ରତି ସେ ଏତେ ସଶ୍ରଦ୍ଧ ଥିଲେ ଯେ 'ମାଟିର ମଣିଷ' ଉପନ୍ୟାସର ଶିଳ୍ପରୂପ ମହାନୁଭବତାର ଶୀର୍ଷକୁ ଉନ୍ନୀତ ହୋଇଯାଇଛି । ବରଜୁ ସତରେ ସଂସାରରୁ ପଳାୟନ କରିନାହିଁ ବରଂ ସେହି ତ୍ୟାଗ ଓ ଉତ୍ସର୍ଗର ଏକ ସମୁନ୍ନତ ଶୀର୍ଷକୁ ସେ ଅବଶେଷରେ ଯାଇପାରିଛି । ଏହାହିଁ ଉପନ୍ୟାସର ସବୁଠାରୁ ଆକର୍ଷଣୀୟ ଦୃଶ୍ୟପଟ, ଯେଉଁଠି ପାଠକର ଭାବାନ୍ତର ହୁଏ । ବରଜୁର କିଛି ଉଦାର ଆଦର୍ଶ ବେଳେ ବେଳେ ହାରାବୋଉ ଆଖିକୁ ମଧ ଅଶ୍ରୁପ୍ଲାବିତ କରିଦେଇଛି । ଆଦର୍ଶକୁ ଜୀବନରେ ରୂପାୟିତ କରିବା ପାଇଁ ବରଜୁକୁ ଯେଉଁ ସଂଗ୍ରାମ କରିବାକୁ ପଡ଼ିଛି - ସେଥିରେ ସେ ଦ୍ୱନ୍ଦ୍ୱହୀନ ଓ ସିଦ୍ଧାନ୍ତନିଷ୍ଠ । କୌଣସି ପ୍ରତିକୂଳତା ବା ପ୍ରତିରୋଧରେ ସେ ଭାଙ୍ଗି ପଡ଼ି ନାହିଁ ।

ପୁଣି ସମାଜ ଓ ଆଦର୍ଶଗତ ମୂଲ୍ୟବୋଧକୁ ଛାଡ଼ିଦେଲେ ବି କାଳିନ୍ଦୀଚରଣ 'ମାଟିର ମଣିଷ' ପ୍ରକୃତିରେ ଅନ୍ତର୍ନିହିତ ଅନାସକ୍ତି ଓ ଉଦାସୀନତାକୁ ମଧ୍ୟ ବର୍ଣ୍ଣନା କରିଛନ୍ତି । ମଣିଷର ନାନା ସାଂସାରିକ ଇଚ୍ଛା, ମଣିଷର ବିଷୟବୁଦ୍ଧି, ତା'ର ସ୍ୱାର୍ଥ, ଦାବି, ଈର୍ଷା ଓ ହିଂସା - ଏଇସବୁ ସତ୍ତ୍ୱେ ଜୀବନରେ କିଛି ଉଦାସୀନତା, କିଛି ନିଃସଙ୍ଗତା ମଧ୍ୟ ରହିଛି । ବରଜୁ ପଧାନ ବ୍ୟକ୍ତିତ୍ୱର ଏହି ଗୁଣଟି ଏକ ବିଶିଷ୍ଟ ଉପାଦାନ । ଷଡ଼ଯନ୍ତ୍ରର ହାତବାରିସି ହୋଇଥିବା ହରି ମିଶ୍ର ବୁଦ୍ଧିରେ ଚାଳିତ ଛକଡ଼ି ନିଜ ପରିବାରର ସମସ୍ତ ସରସ ଆନନ୍ଦକୁ ଛାରଖାର କରିଦେଇଥିବା ସତ୍ତ୍ୱେ ସେ ଜୀବନ ବିଷୟରେ ଅସଲ ସତ୍ୟକୁ ଅନୁଭବ କରିଛି, ଯେତେବେଳେ ତା' ନିଜ ଘର ତାକୁ ଖାଁ ଖାଁ ଲାଗିଛି ଓ ନିଜ ଜୀବନ ତାକୁ ଭାରି ନିଛାଟିଆ ଲାଗିଛି ।

କାଳିନ୍ଦୀଚରଣ ଲେଖିଛନ୍ତି - 'ବାରିପଟ ଆମ୍ବ ଗଛରେ ଗୋଟିଏ କପୋତୀ ବସି ଡାକ ଛାଡୁଛି, ଚାଉଳ ମାଣ ପୂରିଲା - ଉଠୁରେ ପୁତା - ଉଠ୍ ଉଠ୍ । ଡାମରାକାଉଟା ପିଢ଼ା ଉପରେ ଘଡ଼ିକେ ପହରକେ ଡକା ପାରୁଛି - କା-କା- । ଛକଡ଼ିର ମନଟା ଉଦାସ ହୋଇଗଲା । ଭାଇ - ବାପ - ମାଆ ସମସ୍ତଙ୍କ କଥା ମନେ ପଡ଼ିଲା । ସମସ୍ତେ ଥିଲାବେଳେ ଏ ଘର କ'ଣ ହୋଇଥିଲା - ଆଜି କ'ଣ ହୋଇଛି ? କାହାର ସଂପତ୍ତି, କାହାର ବାରିଘର, ଛକଡ଼ି କିଛି ବୁଝିପାରିଲା ନାହିଁ । ସବୁ ଅନ୍ଧାରିଆ ଦିଶିଲା । ମନଟା ତା'ର ପିତା ପଡ଼ିଗଲା ।'

'ମାଟିର ମଣିଷ' ଉପନ୍ୟାସରେ ଛକଡ଼ି ଓ ନେତ୍ରମଣି ଏହି ଦୁଇଟି ଚରିତ୍ର ଭିତରେ କାଳିନ୍ଦୀଚରଣ ମଣିଷ ଭିତରେ ଥିବା କ୍ଷୁଦ୍ରତା ଓ ସଂକୀର୍ଣ୍ଣ ବିଷୟ ସ୍ୱାର୍ଥକୁ ଦେଖେଇଛନ୍ତି । ନିଜର ସ୍ୱାର୍ଥ ପାଇଁ ସବୁ ଉଦାର ଆଦର୍ଶ ପ୍ରତି ଜଣେ ବିମୁଖ ହେଲେ ବି, ପରିଶେଷରେ ତାହା ହାର ମାନିଯାଏ ଓ ଜୀବନର ସାର ମଣିଷପଣିଆ ଆଗରେ କିପରି ହାର ମାନିଯାଏ, ତା'ର ଚମତ୍କାର ନଜିରଟିଏ ସତେ ଯେପରି ମାଟିର ମଣିଷ ଉପନ୍ୟାସର କାହାଣୀ । ଏହି ମାଟିର ମଣିଷ ଉପନ୍ୟାସ କାହାଣୀ ଭିତରେ ଯେଉଁ ମହାପ୍ରାଣ ସଂସ୍ଥାପିତ ହୋଇଛି କେବଳ ଓଡ଼ିଆ ଉପନ୍ୟାସ ଧାରାରେ କାହିଁକି, ସମଗ୍ର ଭାରତୀୟ ଉପନ୍ୟାସ ଧାରାରେ ମଧ୍ୟ ଏହି ଉପନ୍ୟାସଟିକୁ ଆମେ ଖୁବ୍ ମୂଲ୍ୟ ଦେଇ ଏହାକୁ ଉଲ୍ଲେଖଯୋଗ୍ୟ ବୋଲି କହି ଆସିଛୁ ।

ମଣିଷର ମଣିଷପଣିଆ ହେଉଛି ମଣିଷର ଅସଲ ଶ୍ରୀ ବା ସମ୍ପତ୍ତି । ମଣିଷପଣିଆ ନଥିବା ମଣିଷଟି ଫମ୍ପା ମଣିଷ, ନହେଲେ ପଶୁ । ମନୁଷ୍ୟର ସର୍ବୋତ୍ତମ ସଂସ୍କାର ହେଉଛି କୌଣସି ପ୍ରଲୋଭନ ବା ସ୍ୱାର୍ଥର ବଶବର୍ତ୍ତୀହୋଇ ମଣିଷପଣିଆକୁ ବିସର୍ଜନ ଦେବା । ମଣିଷପଣିଆ ମଣିଷକୁ ରକ୍ଷାକରେ । 'ମାଟିର ମଣିଷ' ଉପନ୍ୟାସରେ ପଧାନ ବୁଢ଼ା ମୁହଁରେ କାଳିନ୍ଦୀଚରଣ କହିଛନ୍ତି- 'ଧନ ସଂପତ୍ତିରେ ସବୁ କିଣା ହୁଏରେ ବାପ, ପୁଣ୍ୟ କିଣା ହୁଏ ନାହିଁ । ଟଙ୍କାଦେଇ ଟିକଟ କିଣି କରି ବୈକୁଣ୍ଠକୁ ଯିବାର ଉପାୟ ନାହିଁ । ପୁଣ୍ୟ କିଣେ ଖାଲି ମଣିଷପଣିଆରେ ବାପ । ଯୋଉଠି ଯେତେ ମଣିଷପଣିଆ କମ୍ତି, ସେଠି ପାପ ସେତିକି ବେଶୀ ।'

କାଳିନ୍ଦୀଚରଣଙ୍କ 'ମାଟିର ମଣିଷ' ମାନବୀୟ ଗୁଣ ଓ ତା'ର ଶୁଚିତାକୁ ହିଁ ଉଭାସିତ କରିଛି । ଜଣେ ଶିଳ୍ପୀର ନୈତିକ ମୂଲ୍ୟବୋଧ ଏକ ଦୃଢ଼ ବିଶ୍ୱସନୀୟତା ସୃଷ୍ଟିକରେ ଯାହା କଳାର ପୂର୍ଣ୍ଣତା ପାଇଁ ଏକାନ୍ତ ଅପରିହାର୍ଯ୍ୟ । 'ମାଟିର ମଣିଷ' ଉପନ୍ୟାସ ସର୍ବୋତ୍ତମ ଭାବେ ଏକ ମାନବ-କେନ୍ଦ୍ରିକ ଉପନ୍ୟାସ ଯାହା ମନୁଷ୍ୟ ଜୀବନର ଗୁଣ ବା ଆଦର୍ଶଗତ ବିକାଶକୁ ପ୍ରତିପାଦନ କରିଛି ।

ପାଠକର ବୋଧ, ବିବେକ, ମନ ଓ ହୃଦୟକୁ ଯେ ଥରାଇ ଦେଇପାରେ ନାହିଁ, ଯେଉଁ କଥା ବା କାହାଣୀ ମଣିଷ ପ୍ରାଣରେ ଗୋଟେ ଉଲ୍ଲାସ ଆଣିପାରେ ନାହିଁ, ତାହା ଯେତେ ନାଟକୀୟ ଓ ବହୁପ୍ରସଙ୍ଗଯୁକ୍ତ କାହାଣୀ ହେଉ ପଛେ ତାହା ପାଠକର ଅନ୍ତରାତ୍ମାକୁ କଦାପି ଛୁଇଁ ପାରିବ ନାହିଁ । ସେଥିପାଇଁ ମାଟିର ମଣିଷ ଉପନ୍ୟାସ ଭିତରେ ଏକ ଚିରନ୍ତନ ମହାମାନବୀୟ ଭାବାବେଗର ରୂପକ ଚିତ୍ରଟିଏ ରହିଛି ; ଯାହାକି ମଣିଷର ସୀମିତ ମନ ଓ ହୃଦୟର ସଂକୀର୍ଣ୍ଣତାକୁ ଅତିକ୍ରମ କରିବା ପାଇଁ ଏକ ଉଦ୍‌ବୁଦ୍ଧ ଅନୁପ୍ରେରଣା ସୃଷ୍ଟି କରିଦିଏ ।

କେବଳ ଏହି ବହୁଚର୍ଚ୍ଚିତ ମାଟିର ମଣିଷ ଉପନ୍ୟାସଟି ନୁହେଁ ତାଙ୍କର 'ଅମର ଚିତା', 'ମୁକ୍ତା ଗଡ଼ର କ୍ଷୁଧା', 'ଲୁହାର ମଣିଷ' ଓ 'ଆଜିର ମଣିଷ' ପରି ଉପନ୍ୟାସର ଭାବପିଣ୍ଡ ଭିତରେ ଏହି ସୃଜନଶୀଳ ମାନବୀୟ ମୂଲ୍ୟବୋଧର ରୂପାୟନ ହୋଇଛି । କାଳିନ୍ଦୀଚରଣଙ୍କ ଆତ୍ମା ଯେପରି ପ୍ରକୃତିପ୍ରାଣ, ତାଙ୍କ ଶିଳ୍ପୀ-ବ୍ୟକ୍ତିତ୍ୱର ସମ୍ବେଗ ସେହିପରି ମଣିଷ ପ୍ରତି ଅତ୍ୟନ୍ତ ସଶ୍ରଦ୍ଧ । ମଣିଷର ଜୀବନ ଯାତ୍ରା ଅସରନ୍ତି, କାହିଁ କେତେ କାଳରୁ ଚାଲିଛି । ହଜାର ହଜାର ବର୍ଷର ମଣିଷର ଜୀବନଯାତ୍ରାକୁ ଲକ୍ଷ୍ୟ କଲେ ମଣିଷ ଜୀବନକୁ ବୁଝିହୁଏ, ତା'ର ଜୀବନ ପ୍ରବୃତ୍ତିର ସ୍ୱରୂପକୁ ଜାଣିହୁଏ । 'ମାଟିର ମଣିଷ' ଉପନ୍ୟାସରେ ମଣିଷର ଏହି ଚିରନ୍ତନ ଜୀବନଯାତ୍ରା ଉପନ୍ୟାସର ବିଷୟପିଣ୍ଡ ଭିତରେ ସୂଚିତ ହୋଇଛି । ଏଥିରେ ଔପନ୍ୟାସିକ କାଳିନ୍ଦୀଚରଣ ଲେଖିଛନ୍ତି- 'କେତେ କାଳ ଧରି ମଣିଷ ଜାତିର ସୁଅ ବହିଯାଇଅଛି । ମଣିଷ ଉପରେ ମଣିଷ ମାଡ଼ିକୁଦି ଦଳି ଚାଲିଯାଉଛି । ଗୋଡ଼ତଳରୁ ଦରମଲା ମଣିଷର ମଲିମଲି ଡାକ ତା' କାନକୁ ଶୁଭୁନାହିଁ । ସେ ଏଇ ସୁଅରେ ଭାସି ଚାଲିଛି, ଦଣ୍ଡେ ହେଲେ ଅଟକି ଠିଆ ହୋଇ ନାହିଁ ।'

ପ୍ରକୃତି, ପରିବେଶ, ମଣିଷ, ସମୟ, ସମାଜ ସବୁକିଛିର ଗୋଟିଏ ଆବିର୍ଭୂତ ରୂପ ହେଉଛି କାଳିନ୍ଦୀଙ୍କ ଉପନ୍ୟାସଗୁଡ଼ିକ । ତାଙ୍କ ଉପନ୍ୟାସ ସବୁ ପୁଣି ଗୋଟିଏ ସାମାଜିକ ବିବର୍ତ୍ତନର ପ୍ରତୀକ ରୂପ । 'ମାଟିର ମଣିଷ', 'ଲୁହାର ମଣିଷ' ଓ 'ଆଜିର ମଣିଷ' ଉପନ୍ୟାସ ତିନୋଟିର ନାମକରଣରେ ହିଁ ଏହି ବିବର୍ତ୍ତନ ସୂଚିତ ହୋଇଛି । ଉଲ୍ଲିଖିତ ଏହି ତିନୋଟି ଉପନ୍ୟାସର ଏପରି ନାମକରଣ କରି ସେ ନିଜ ଶିଳ୍ପୀ ଜୀବନର ସଚେତନାର ପରିଚୟ ଦେଇ ପାରିଛନ୍ତି । ଜଣେ ଲେଖକ ଯେଉଁ ଛବିଟିଏ ଆଙ୍କେ, ତାହା ଯଦି ଗୋଟିଏ ବୃହତ୍ତର ଜଗତ ଓ ଜୀବନକୁ ପ୍ରତୀକିତ କରିପାରେ ନାହିଁ, ତା'ର ପ୍ରଭାବ ଓ ଆବେଦନ ସେହିପରି ଗୌଣ ହୋଇଯାଏ । ପ୍ରଚ୍ଛଦପଟଗୁଡ଼ିକ ବହୁ ଆକର୍ଷଣୀୟ ଓ ନାନା ବିଚିତ୍ର ରୂପସଜ୍ଜା ଥିବା ସତ୍ତ୍ୱେ ଓ

ସେ ସବୁରେ ବାଳକବାଳିକାଙ୍କ ମିଳନ ଚିତ୍ରଥିବା ସତ୍ତ୍ୱେ ସେପରି ଉପନ୍ୟାସ ବାସ୍ତବରେ ମାନ୍ୟସ୍ଥିତ ମର୍ଯ୍ୟାଦା ଲାଭ କରିପାରି ନାହିଁ । କାଳିନ୍ଦୀଚରଣ ବହୁ ସଂଖ୍ୟକ ଉପନ୍ୟାସ ଲେଖି ନଥିଲେ ହେଁ ତାଙ୍କର ଏଇ କେତୋଟି ଉପନ୍ୟାସ ପାଇଁ ସେ ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ ଶିଳ୍ପୀର ମର୍ଯ୍ୟାଦା ଲାଭ କରିପାରିଛନ୍ତି । ପୂର୍ବରୁ ବହୁପ୍ରସଙ୍ଗରେ ସୂଚିତ ହୋଇଛି ଯେ କାଳିନ୍ଦୀଚରଣଙ୍କ 'ମାଂସର ବିଳାପ' ପରି ଗୋଟିଏ ମାତ୍ର ଗଳ୍ପ ଓ 'ମାଟିର ମଣିଷ' ପରି ଗୋଟିଏ ମାତ୍ର ଉପନ୍ୟାସ ସମଗ୍ର ଓଡ଼ିଆ ସାହିତ୍ୟରେ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇ ରହିଥିବ ।

ତାଙ୍କର ଅନ୍ୟ ଦୁଇଟି ଉପନ୍ୟାସ ହେଉଛି 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମର ଚିତା' । 'ମୁକ୍ତା ଗଡ଼ର କ୍ଷୁଧା' ଓ 'ଅମର ଚିତା' ଉପନ୍ୟାସ ଦୁଇଟି ଗଳ୍ପ ତଥା ଘଟଣାପ୍ରବାହ ଦୃଷ୍ଟିରୁ ପ୍ରକୃତରେ ଗୋଟିଏ ଉପନ୍ୟାସ । ଏ ଦୁଇଟି ଉପନ୍ୟାସର ମୁଖ୍ୟ ଚରିତ୍ରଗୁଡ଼ିକ ହେଲେ ଶୁଭକାନ୍ତ ଓ ସନାତନ । ମୁକ୍ତାଗଡ଼ର ରାଜା ଶୁଭକାନ୍ତ ଅଶୋକଙ୍କ ପରି ଯେପରି ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଛନ୍ତି । ଶୁଭକାନ୍ତଙ୍କ ଚରିତ୍ର ଚିତ୍ରଣ ପଶ୍ଚାତ୍‌ରେ ଔପନ୍ୟାସିକ କାଳିନ୍ଦୀଚରଣଙ୍କ ମାନସରେ ରାମାୟଣ ଓ ମହାଭାରତର ଆଦର୍ଶ ରାଜଧର୍ମବୋଧ ରହିଛି । ଭାରତୀୟ ଲେଖକ ଭାବରେ କାଳିନ୍ଦୀଚରଣଙ୍କ ଆଦର୍ଶ ଓ ନୈତିକ ମୂଲ୍ୟବୋଧର ଆରୋପଣ ଓ ଚରିତ୍ର ଚିତ୍ରଣରେ ଏସବୁର ରୂପାୟନ ଅତ୍ୟନ୍ତ ସ୍ୱାଭାବିକ । 'ମାଟିର ମଣିଷ' ଓ 'ଲୁହାର ମଣିଷ' ଉପନ୍ୟାସରେ ମଧ ଔପନ୍ୟାସିକ କାଳିନ୍ଦୀଚରଣଙ୍କ ଏହି ଆଦର୍ଶବୋଧ ସୂଚିତ ହୋଇଛି । ଜଣେ ବଡ଼ ଲେଖକଙ୍କ ଲେଖାରେ ସେ ଜାତିର ମହାକାବ୍ୟର ପ୍ରଭାବ ରହିଥାଏ । ଜଣେ ବଡ଼ ଲେଖକ ସେଥିପାଇଁ ତା'ର ଐତିହ୍ୟ ଓ ପରମ୍ପରାବୋଧରୁ ନିଜକୁ ଓ ନିଜ ଚେତନାକୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ କରିପାରେ ନାହିଁ । ମୁକ୍ତାଗଡ଼ର କ୍ଷୁଧା ଓ ଅମର ଚିତା ଉପନ୍ୟାସ ଦୁଇଟି ଏହି ଆଦର୍ଶ ମୂଲ୍ୟବୋଧର ଚିତ୍ରଣ କାରଣରୁ କଥାବସ୍ତୁ ଓ ଚରିତ୍ର ଚିତ୍ରଣରେ ଅଲଗା ଓ ଅଲୌକିକ ଲାଗେ । 'ମାଟିର ମଣିଷ'ରେ ଆଦର୍ଶ ଓ ନୈତିକ ମୂଲ୍ୟବୋଧ ଥିବା ସତ୍ତ୍ୱେ ମାଟିର ମଣିଷ ଗୋଟିଏ ବାସ୍ତବ ଜୀବନ ଆଲେଖ୍ୟ ପରିପ୍ରେକ୍ଷୀରେ ଯେପରି ଭୂମି - ସଂଲଗ୍ନ ଲାଗେ, ଉଲ୍ଲିଖିତ ଦୁଇଟି ଉପନ୍ୟାସ ସେପରି ଲାଗେ ନାହିଁ । ଏହା ସତ୍ତ୍ୱେ କାଳିନ୍ଦୀଚରଣଙ୍କ ଉପନ୍ୟାସଗୁଡ଼ିକ ମଣିଷର ମହତର ସାମାଜିକ ଦାୟିତ୍ୱବୋଧ ବିଷୟରେ ଅଧିକ ସଚେତନ ଓ ସେହି କାରଣରୁ ତାଙ୍କ ଉପନ୍ୟାସଗୁଡ଼ିକର ସାର୍ବକାଳୀନତାକୁ ସ୍ୱୀକାର କରାଯାଏ । ଶୁଭକାନ୍ତ ଓ ସନାତନ ଆଦି ଚରିତ୍ର ଭିତରେ ତଥାପି ଜଣେ ପାଠକ ସେହି ମଣିଷକୁ ହିଁ ଦେଖେ । ଏହି ଦୁଇଟି ଉପନ୍ୟାସରେ ଦୁର୍ଭିକ୍ଷର ଭୀଷଣରୂପ ବର୍ଣ୍ଣିତ ହୋଇଛି । ଉପନ୍ୟାସ ଦୁଇଟିରେ ମଣିଷ ଜୀବନର ଦାରୁଣ ଦୁଃଖ ଓ ବିଡ଼ମ୍ବନାର ଚିତ୍ରଣ ରହିଛି । ଦୁର୍ଭିକ୍ଷ ସହିତ ବନ୍ୟା - ମହାମାରୀ, ଏସବୁ ମଣିଷର ବଞ୍ଚି ରହିବାକୁ କିପରି ବିପର୍ଯ୍ୟସ୍ତ କରିଛି, ତା'ର ଏକ ଲୋମହର୍ଷଣକାରୀ ଚିତ୍ର ଆଙ୍କିଛନ୍ତି ଔପନ୍ୟାସିକ କାଳିନ୍ଦୀଚରଣ । କାଳିନ୍ଦୀଚରଣ ଏହି ଦୁର୍ଭିକ୍ଷ ପୃଷ୍ଠଭୂମି ଉପରେ ସନାତନକୁ ଏକ ବିପ୍ଲବୀ କରି ଚିତ୍ରଣ କରିଛନ୍ତି । ଏହି ଚରିତ୍ର ଜରିଆରେ ଶିଳ୍ପୀ କାଳିନ୍ଦୀଚରଣଙ୍କ ମୂଳଭାବ ବା ଚେତନା ପ୍ରକଟିତ ହୋଇଛି । ଜଣେ ମଣିଷ ଅନେକ ମଣିଷଙ୍କ ପାଇଁ ନିଜକୁ ବଳି ଦେଇପାରେ, ନିଜ ଜୀବନର ସୁଖ ଭୋଗରୁ ନିଜକୁ ବଞ୍ଚିତ କରିଦେଇପାରେ, ସେହି ଚରମ ତ୍ୟାଗର ନିଦର୍ଶନ

ହେଉଛି ଉଭୟ 'ମୁକ୍ତାଗଡ଼ର କ୍ଷୁଧା' ତଥା 'ଅମର ଚିତା' ଉପନ୍ୟାସରେ ଚିତ୍ରିତ ସନାତନ ଚରିତ୍ର । ମୁକ୍ତାଗଡ଼ର କ୍ଷୁଧାରେ ନାୟକ ସନାତନ ମଣିଷ ପାଇଁ ନିଜକୁ ସବୁମତେ ଉତ୍ସର୍ଗ କରିଛି । ସନାତନ କେବଳ ମଣିଷ ବ୍ୟତୀତ ଆଉ କାହାରିକୁ ସ୍ୱୀକାର କରେ ନାହିଁ, ରାଜାପ୍ରଜା, ଧନୀଦରିଦ୍ର, ପଣ୍ଡିତମୂର୍ଖ, ବ୍ରାହ୍ମଣଚଣ୍ଡାଳ କାହାରି ପ୍ରଭେଦ ସେ ମାନେ ନାହିଁ । ସମସ୍ତେ ମନୁଷ୍ୟ । ବଞ୍ଚିବାର ଅଧିକାର ଅଛି ପ୍ରତି ପୁରୁଷ, ନାରୀ, ଶିଶୁ ଆଉ ବୃଦ୍ଧର ।

ରାଜା ଶୁଭକାନ୍ତ ପ୍ରଥମେ ତାଙ୍କ ଜୀବନ ଆରମ୍ଭରେ ଭୋଗବିଳାସରେ ମାତିଛନ୍ତି ଓ ସେହି କାରଣରୁ ଜଣେ ପ୍ରଜାପୀଡ଼କ ରାଜା ଭାବରେ ପ୍ରଜାମାନଙ୍କୁ ଶୋଷଣ କରିଛନ୍ତି ଓ ନିଜର ରାଜଧର୍ମ ପ୍ରତି ଚରମ ଅବହେଳା ମଧ କରିଛନ୍ତି । ଅଥଚ ସେହି ରାଜା ଶୁଭକାନ୍ତ ପରେ ନିଜକୁ ପରିବର୍ତ୍ତିତ କରାଇ ପାରିଛନ୍ତି ଓ ଏକାନ୍ତ ଉତ୍ସର୍ଗୀକୃତ ପ୍ରଜାବତ୍ସଳ ଜୀବନଯାପନ କରିଛନ୍ତି । ରାଜା ଶୁଭକାନ୍ତ ପ୍ରଜାମାନଙ୍କ ସେବାରେ ନିଜକୁ ଏପରି ଭାବେ ନିୟୋଜିତ କରିଛନ୍ତି ଯେ ସେ ପାଠକଙ୍କ ଆଗରେ ଏକ ଆଦର୍ଶ ରାଜା ରୂପେ ପରିଚିତ ହୋଇଛନ୍ତି । ଏହି ଉପନ୍ୟାସରେ ସନାତନ ଯେମିତି ଗୋଟିଏ ଉଚ୍ଚତମ ମୂଲ୍ୟବୋଧପିଣ୍ଡିତ ଏକ ଅନୁପମ ଚରିତ୍ର, ସେହିପରି ଆଉ ଏକ ଚରିତ୍ର ଅଭିରାମ, ଯାହାକୁ ଔପନ୍ୟାସିକ ଚିତ୍ରଣ କରିବାରେ ଅନନ୍ୟ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ସେ ଏପରି ଏକ ବେପରୁଆ ତଥା ଅନାସକ୍ତ ବହେମେନିଆନ୍ ଯେ ବନ୍ୟା ସ୍ରୋତରେ ମଧ ଗୀତ ମେଲି ଦେଇପାରେ / 'ବୁଡ଼ିଗଲାବେଳେ ଆରେ ଉଡ଼ିଗଲା ଚଢ଼େଇ / ପିଲାଠାରୁ ମାଆ ଭାତ ଖାଏ ଦେଖ ଛଡ଼େଇ / ଧରମ କରମ ତୋର ପଢୁ ପୋଷା ଶୁଆରେ / ନୟନର ଜଳ ଖାଲି ବୁହାରେ ।'

ମୁକ୍ତାଗଡ଼ର କ୍ଷୁଧା ଓ ଅମର ଚିତା ଉପନ୍ୟାସ ଦୁଇଟିକୁ ଗୋଟିଏ ସାଧାରଣ ଜୀବନର ଆଲେଖ୍ୟ ବା ସାଧାରଣ ନିତିଦିନିଆ ସମାଜର ପ୍ରତିଛବି ଭାବରେ ଦେଖିଲେ ଏହି ଦୁଇଟି ଉପନ୍ୟାସର ମର୍ମବାଣୀକୁ ଉପଲବ୍ଧି କରିହେବ ନାହିଁ । ଏହି ଦୁଇ ଉପନ୍ୟାସର ପ୍ରକୃତ ସଫଳତା ଏହାର ପରିକଳ୍ପନାରେ ହିଁ ନିହିତ, ଯେଉଁଠି ଭାରତୀୟ ଜୀବନବୋଧର ଶୀର୍ଷତମ ମୂଲ୍ୟବୋଧ ହିଁ ପ୍ରତିଷ୍ଠା ଲାଭ କରିଛି । ରାମାୟଣ, ମହାଭାରତ ବା ବେଦ, ଉପନିଷଦରେ ଆମେ ଯେଉଁ ଉଚ୍ଚତମ ମୂଲ୍ୟବୋଧସବୁ ଦେଖୁଁ ସେହି ମୂଲ୍ୟବୋଧର ପ୍ରକଟନ କରାଯାଇଛି ଏହି ଉପନ୍ୟାସରେ । ଆମେ ଆମର ସାମାଜିକ ମନ ଓ ବ୍ୟକ୍ତିଗତ ପରିଚିତ ଅନୁଭୂତି ଭିତରେ ଏହି ଉପନ୍ୟାସର ଚରିତ୍ର ଓ ପରିବେଶକୁ ଗ୍ରହଣ କରିପାରୁନାହିଁ । ସେଥିପାଇଁ ଏହି ଦୁଇ ଉପନ୍ୟାସର ଚରିତ୍ର ଓ ପରିବେଶ ଆମକୁ ଅଲୌକିକ ଲାଗେ ଓ ସେହି କାରଣରୁ ଅଲଗା ଲାଗେ । ଜଣେ ମହତ୍ ଶିଳ୍ପୀ ଜୀବନର ବାସ୍ତବ ରୂପାୟନ ଶିଳ୍ପାୟନ ଅପେକ୍ଷା ମହତ୍ତର ଉପଲବ୍ଧି ପ୍ରତି ଅଧିକ ଅଙ୍ଗୀକାରବଦ୍ଧ ହୋଇଥାଏ । ଏହି ଅଙ୍ଗୀକାରବଦ୍ଧତା ହେଉଛି ମୁକ୍ତାଗଡ଼ର କ୍ଷୁଧା, ଅମର ଚିତା ଉପନ୍ୟାସଦ୍ୱୟର ପ୍ରକୃତ ସଫଳତା । 'ମାଟିର ମଣିଷ' ଉପନ୍ୟାସରେ କାଳିନ୍ଦୀଚରଣ ହାରାବୋଉ ନେତ୍ରମଣି ପରି ଯେଉଁ ଅନୁପମ ନାରୀ ଚରିତ୍ରର ଚିତ୍ରଣ କରିଛନ୍ତି, ସେହିପରି ଗୌରୀ, ଅଳକା, ସୁନନ୍ଦା ଓ ଚିତ୍ରା ଆଦି ଚରିତ୍ର ଚିତ୍ରଣ କରିଛନ୍ତି । ଏଇ 'ମୁକ୍ତା

ଗଡ଼ର କ୍ଷୁଧା' ଓ 'ଅମର ଚିତା' ଉପନ୍ୟାସରେ ଅଳକାକୁ ସେ ଏକ ଆଦର୍ଶ ଭାରତୀୟ ନାରୀ ଭାବେ ସତୀ ଓ ପତିବ୍ରତା କରି ଚିତ୍ରଣ କରିଛନ୍ତି ଏବଂ ଏକ ସେବା ଓ ସମବାୟ ସହଯୋଗର ପରିବେଶ ସୃଷ୍ଟି କରିଛନ୍ତି ।

ଏହି ଉପନ୍ୟାସର ପରିବେଶ କାହ୍ନୁ ଚରଣଙ୍କ 'ହା ଅନ୍ନ', 'ଶାସ୍ତି', 'ବଜ୍ରବାହୁ' ଏବଂ ଗୋପୀନାଥ ମହାନ୍ତିଙ୍କ ପ୍ରସିଦ୍ଧ 'ମାଟିମଟାଳ' ଉପନ୍ୟାସକୁ ସ୍ମରଣକୁ ଆଣେ । ନାରୀ-ପୁରୁଷ ନିର୍ବିଶେଷରେ କାଳିନ୍ଦୀଚରଣଙ୍କ ଚରିତ୍ରଗୁଡ଼ିକ ପୀଡ଼ିତ ମଣିଷକୁ ତ୍ରାଣ କରିବା ପାଇଁ ନିଜକୁ ନାନାମତେ ନିୟୋଜିତ କରିଛନ୍ତି । ତାଙ୍କ ଉପନ୍ୟାସଗୁଡ଼ିକରେ ମାନବିକତା ହିଁ ବିଶେଷ ପ୍ରତିପାଦିତ ହୋଇଛି । ଜଣେ ପ୍ରକୃତ ସୃଜନଶୀଳ ଶିଳ୍ପୀ ଏହି ମାନବିକତାକୁ ତା'ର ଶିଳ୍ପାୟନରେ ଅଧିକ ମୂଲ୍ୟ ଦେଇଥାଏ । ମଣିଷର ସ୍ନେହ, ମମତା, ପ୍ରେମ, କାରୁଣ୍ୟ, ସେବା ସମବାୟ, ତ୍ୟାଗ ଉତ୍ସର୍ଗ ପରି ସମୁନ୍ନତ ମାନବୀୟ ସଦ୍‌ଗୁଣାବଳୀକୁ ସେ ତାଙ୍କ ଚରିତ୍ର ଜରିଆରେ ପ୍ରଦର୍ଶନ କରିଛନ୍ତି ଓ ଖଳଚରିତ୍ର ମାଧ୍ୟମରେ ମଧ୍ୟ ମଣିଷ ଭିତରେ ଥିବା ଅଶ୍ରଦ୍ଧା, ଅପ୍ରେମ, ଅନୁଦାରତାକୁ ଚିତ୍ରଣ କରିଛନ୍ତି । ଏହି ପରିପ୍ରେକ୍ଷୀରେ କାଳିନ୍ଦୀଚରଣଙ୍କ ଉପନ୍ୟାସଗୁଡ଼ିକୁ ମାନବୀୟ ମୂଲ୍ୟବୋଧର ଏକ ଏକ ଶୁଭ୍ର ଓ ଗମ୍ଭୀର ଚିତ୍ରପଟ ବୋଲି ବର୍ଣ୍ଣନା କରାଯାଇପାରେ ।

କାଳିନ୍ଦୀଚରଣଙ୍କ ଉପନ୍ୟାସ ଗୁଡ଼ିକରେ କେବଳ ସେହି ସମୟର ଛବି ଅଙ୍କିତ ହୋଇଛି ତା' ନୁହେଁ; ବରଂ ଜଗତ ଓ ଜୀବନର ଚିରନ୍ତନ ଭାବାବେଗ ଓ ମୂଲ୍ୟବୋଧର ଚିତ୍ରଣ ହୋଇଛି । ତାଙ୍କ ଉପନ୍ୟାସଗୁଡ଼ିକୁ ତେଣୁ ଜଣେ ସାମୟିକ ଘଟଣାବଳୀର ଚିତ୍ର (Satire) ବୋଲି କହିପାରିବନି; ବରଂ ଉପନ୍ୟାସଗୁଡ଼ିକର ମାନବୀୟ ସମ୍ବେଗ ଓ ମଣିଷ ଜୀବନର ମୌଳ ପ୍ରବୃତ୍ତି ଦୃଷ୍ଟିରୁ ଉପନ୍ୟାସ ଗୁଡ଼ିକୁ ଏପିକ୍‌ଧର୍ମୀ ବୋଲି କୁହାଯିବ ; ଯାହା ସମୟକ୍ରମେ ସହଜରେ ବଦଳେ ନାହିଁ । ଖୁବ୍ ସମର୍ଥ ଶିଳ୍ପୀମାନ୍ରେ ହିଁ ସମସାମୟିକ ଘଟଣାର ଚିତ୍ର ଆଙ୍କୁଥିଲାବେଳେ ମହାକାବ୍ୟିୟ ଚିରନ୍ତନତାର ସୂଚନା ଦେଇଥାନ୍ତି । ପ୍ରାକୃତିକ ଦୃଶ୍ୟପଟସବୁ ଏହି ଚିରନ୍ତନତାର ଅଂଶବିଶେଷ । କାଳିନ୍ଦୀଚରଣ ତାଙ୍କ ଉପନ୍ୟାସମାନଙ୍କରେ ଗ୍ରାମ୍ୟଦୃଶ୍ୟର ବହୁ ହୃଦୟସ୍ପର୍ଶୀ ବର୍ଣ୍ଣନା କିପରି ଦେଇଛନ୍ତି ତା'ର ଏକ ଦୃଷ୍ଟାନ୍ତ ଦିଆଯାଇପାରେ ତାଙ୍କର 'ଲୁହାର ମଣିଷ' ଉପନ୍ୟାସରୁ । ପୋଖରୀ ଚିତ୍ରଟିଏର ବର୍ଣ୍ଣନା ଦେଇ ସେ ଲେଖିଛନ୍ତି - ପୋଖରୀ କୂଳ ଓଉ ଡାଳରେ ଗୋଟିଏ ଗଞ୍ଜେଇ ଛକି ବସିଛି - ମଝିରେ ମଝିରେ ଉଡ଼ିଆସି ପୋଖରୀ ଉପରେ ଡେଣା ଥରାଇ ଶୂନ୍ୟରେ ରହିଲାଭଳି ଥଣ୍ଟ ତଳକୁ ନୁଆଁଇ ଲକ୍ଷ୍ୟ ଥୟ ରଖୁଛି । ତାହାପରେ ସିଧା ଏକ ଝାମ୍ପମାରି ପାଣି ଭିତରୁ ମୀନ ମାଛଟାଏ ଥଣ୍ଟରେ ଧରି ଓଉ ଡାଳରେ ଯାଇ ବସୁଛି । ଦାଣ୍ଡ ଆମ୍ବ ଗଛରେ ରହି ରହି ଝିଙ୍କାରି ଉଠୁଛି, ସେହି ହନୁମାଙ୍କଡ଼ଟା । ପୁଣି ପୋଖରୀ ଉପରେ ପବନ ଆଣି ପକାଇ ଦେଇ ଯାଉଛି ପରସ୍ତେ ଲେଖାଏଁ ଧୂଳି, ଆଉ ଶୁଖିଲା ବାଉଁଶପତ୍ର । ପୋଖରୀ ହୁଡ଼ା ସେ ପାଖ ବେତ ବୁଦାରୁ ଦୁଇଟି ଝିଙ୍କାରି ବାଦବୁଦିଆ ହୋଇ ନାଗେଶ୍ୱର ବଜାଉଛନ୍ତି । ପାଖ ତୁଠ ଉପରେ ଗୋଟାଏ କଅଁଳା ବାଛୁରୀ ଅକାରଣରେ ଏଣିକି ତେଣିକି ଧାଇଁଛି ।'

କାଳିନ୍ଦୀଚରଣଙ୍କ ଉପନ୍ୟାସଗୁଡ଼ିକରେ କେବଳ ନୀତି, ଆଦର୍ଶ, ମାନବୀୟ ମୂଲ୍ୟବୋଧ, ଗାନ୍ଧିବାଦୀ ଦର୍ଶନ କିଂବା ବେଦ ଉପନିଷଦର ଉପଲବ୍ଧି ମାତ୍ର ପ୍ରତୀକିତ ହୋଇଛି ତା' ନୁହେଁ, ସେସବୁ ଭିତରେ ନାନା ମତେ ମଣିଷର ଜୀବନବୃତ୍ତର ନିଖୁଣଚିତ୍ର ଦେଖିବାକୁ ମିଳେ । ସବୁ ଉପନ୍ୟାସରେ ବିଷୟପ୍ରସ୍ଥ, ଗଳ୍ପ ବିନ୍ୟାସ, କଥିତ ଶୈଳୀ, ଗ୍ରାମ୍ୟ ଜୀବନ ଚିତ୍ରଣ ତଥା ବିରଳ କାବ୍ୟିକ ଅନୁଭବ ଆଦି ବିଶେଷ ଭାବେ ପରିଲକ୍ଷିତ ହୁଏ ; ମୁକ୍ତା ଗଡ଼ର ସନାତନ ଅବା ପାଇକ ସର୍ଦ୍ଦାର ବଳୀୟାର ସିଂହ ଚରିତ୍ରଗୁଡ଼ିକ ବେଳେବେଳେ ଅସ୍ୱାଭାବିକ ମନେ ହେଲେ ହେଁ ଗୋଟିଏ ଆଦର୍ଶ ବା ମୂଲ୍ୟବୋଧକୁ ବୁଝିବା ପାଇଁ ଏ ଚରିତ୍ରଗୁଡ଼ିକୁ ସେହିପରି ଗ୍ରହଣ କରିଦେବାକୁ ହୁଏ । ଚରିତ୍ରଗୁଡ଼ିକ କୌଣସି କାରଣରୁ ଯଦି ଅବାସ୍ତବ ଓ କାଳ୍ପନିକ ମନେହୁଅନ୍ତି, ଅଥଚ ଉପନ୍ୟାସର କାହାଣୀ ମଣିଷ ଜୀବନର ଗମ୍ଭୀର ଭାବକୁ ବ୍ୟକ୍ତ କରି ଚାଲିଛି, ତା'ହେଲେ ଜଣେ ଚରିତ୍ର ଚିତ୍ରଣଗତ ସେହି ଆପାତ ଅବାସ୍ତବତାକୁ ଅଳୀକ ମନେକରିବା ଉଚିତନୁହେଁ । କାରଣ ଆମେ ଯଦି ସାହିତ୍ୟରେ ଏହିପରି ଅନେକ ଅବିଶ୍ୱସନୀୟକୁ ବିଶ୍ୱାସ ନକରିବା (Believed disbelieves) ତା' ହେଲେ ଜଣେ ସାହିତ୍ୟର ପ୍ରକୃତ ରସ ଆସ୍ୱାଦନ କରିପାରିବା ନାହିଁ, କାରଣ କୁତ୍ରାପି କୌଣସି କାଳରେ ସାହିତ୍ୟରେ ଏକ ସ୍ଥୂଳ ବାହ୍ୟ ବାସ୍ତବତା ବିଜ୍ଞପିତ ହୁଏନାହିଁ । ତେଣୁ ସାହିତ୍ୟର ବିଦଗ୍ଧ ପାଠକପାଠିକା ମନେ କରନ୍ତି ଯେ ସବୁକାଳରେ ସାହିତ୍ୟର ସତ୍ୟ ହେଉଛି ସମ୍ଭାବ୍ୟ ସତ୍ୟ (Possible Truth) । ତା' ଛଡ଼ା ଜୀବନ ଓ ସଂସାରର ସବୁକିଛି ସତ୍ୟ ଆମର ସୀମିତ ବାସ୍ତବତାର ଅଭିଜ୍ଞତା ଭିତରେ ପ୍ରକାଶିତ ହୋଇନଥାଏ । ମଣିଷର ସ୍ୱପ୍ନ, ଅଭୀପ୍ସା ମଧ୍ୟ ଏକ ଏକ ବାସ୍ତବତା, ଏପରିକି ମଣିଷର ସୃଜନଶୀଳ କଳ୍ପନାକୁ ମଧ୍ୟ ଆମେ ଅବାସ୍ତବ କରି ପାରିବାନାହିଁ ।

'ମୁକ୍ତା ଗଡ଼ର କ୍ଷୁଧା' ଉପନ୍ୟାସର ଗଳ୍ପ ବା କାହାଣୀପ୍ରସ୍ଥଟି ଅଧିକ ଘଟଣା ବହୁଳ ଓ ଜଟିଳ । ସେଥିପାଇଁ ତାହା 'ମାଟିର ମଣିଷ' ବା 'ଲୁହାର ମଣିଷ' ଉପନ୍ୟାସ ପରି ପାଠକକୁ ଗୋଟିଏ ଭୂମି ବା ସମତଳରେ ଦୀର୍ଘ ସମୟଧରି ଛିଡ଼ା କରିପାରେ ନାହିଁ । 'ମାଟିର ମଣିଷ' ଉପନ୍ୟାସର ବିଷୟ ଲମ୍ବିଯାଇଛି 'ଲୁହାର ମଣିଷ' ଓ 'ଆଜିର ମଣିଷ' ଉପନ୍ୟାସ ଭିତରକୁ । ଏ ତିନୋଟି ଉପନ୍ୟାସର କାହାଣୀ ଗୋଟିଏ ଭାବରେ ଗତିଶୀଳ ହୋଇଛି । ମାଟିର ମଣିଷ ଉପନ୍ୟାସର ଶେଷ ହୋଇଛି ବରଜୁ ହାରାବୋଉ ଓ ତା'ର ପୁଅ ଝିଅଙ୍କୁ ନେଇ ଯେତେବେଳେ ଗୌରାଙ୍ଗ ସେଣ ଘରକୁ ଚାଲି ଆସିଛି । ମାଟିର ମଣିଷ ଉପନ୍ୟାସରେ ତେଣୁ ମୁକ୍ତାଗଡ଼ର କ୍ଷୁଧା ଓ ଅମର ଚିତା ଉପନ୍ୟାସରେ ଯେପରି କାବ୍ୟିକ ନ୍ୟାୟ ପାଳିତ ହୋଇଛି, ତାହା ହୋଇ ନାହିଁ । ସତେ ଯେମିତି ମାଟିର ମଣିଷ ଉପନ୍ୟାସରେ ସଂସ୍ଥାପିତ ଚରିତ୍ରଗୁଡ଼ିକ ପୂର୍ଣ୍ଣାଙ୍ଗ ହେବା ପାଇଁ ବାକି ରହୁଛି । ମାଟିର ମଣିଷରେ ଶାମ ପଧାନର ପୁଅ ବରଜୁ ପଧାନର ଅନ୍ତରରେ ମୁକ୍ତିସଂଗ୍ରାମର ଯେଉଁ ବୀଜ ଅଙ୍କୁରିତ ହୋଇଥିଲା ତାହାର ବିକାଶ ହୋଇଛି ଲୁହାର ମଣିଷ ଉପନ୍ୟାସରେ । ଯେତେବେଳେ ଭାରତର ମୁକ୍ତି ପାଇଁ ମାଟିର ମଣିଷ ବରଜୁ ଲୌହ ଶୃଙ୍ଖଳରେ ହାତ ପାତି ଦେଇଛି । ମାଟିର ମଣିଷ ଉପନ୍ୟାସର ପରିସମାପ୍ତି ବଡ଼ କରୁଣ ଓ ବିଷାଦମୟ । ଆଦୌ ବୁଝିପାରୁ ନଥିବା ହରି ମିଶ୍ର ଷଡ଼ଯନ୍ତ୍ରର ହାତବାରିସି ହୋଇଥିବା ଛକଡ଼ି ପୁଣି ନିଜେ ନିଜକୁ ବୁଝେଇ ପାରିଛି ଓ ମାଟିର ମଣିଷ ଉପନ୍ୟାସର ପରିସମାପ୍ତିରେ ବଡ଼ଭାଇ ବରଜୁ

ପଧାନ ପାଖରେ ଛକଡ଼ି ପହଞ୍ଚିଛି । ନିଜକୁ ନିବେଦନ କରି ଦେବାରେ କନିଷ୍ଠ ଭାବରେ ଛକଡ଼ି ବଡ଼ଭାଇ ନିକଟରେ ଅଶ୍ରୁ ମୋଚନ କରିଛି । ଏତିକିରେ ମାଟିର ମଣିଷ ଉପନ୍ୟାସର ଶେଷଦୃଶ୍ୟ ଅଙ୍କିତ ହୋଇଛି ।

'ବରଜୁ ପଚାରିଛି : କିରେ ! ତୁ କୁଆଡ଼େ ଆସିଗଲୁ ?

ଛକଡ଼ି ଧୀରେ ଧୀରେ କହିଲା, 'ମୁଁ ଯିବି ।'

ବରଜୁ ପଚାରିଲା - 'ତୁ କୁଆଡ଼େ ଯିବୁରେ ?'

'ତୁମେ ଯୁଆଡ଼େ ଯିବ ।'

'ଠକ୍ ଠକ୍ ହୋଇ ଛକଡ଼ି ଆଖିରୁ ପାଣି ବୋହି ପଡ଼ିଲା ।

'ଛି ଛି ମାଇଚିଆ ଟୋକାଟା ।'

କାଳିନ୍ଦୀଚରଣଙ୍କ ଅଧିକାଂଶ ଉପନ୍ୟାସ ସାମାଜିକ । ଓଡ଼ିଶାର ସାମାଜିକ ଜୀବନ-ଛବିକୁ ବିଶେଷତଃ ତାଙ୍କ ମାଟିର ମଣିଷ ଉପନ୍ୟାସରୁ ଲକ୍ଷ୍ୟ କରିହୁଏ । ଶାମ ପଧାନ ଗାଁର ଚାଷୀ । ତା'ର ଏକ ଚାଷୀଘରର ଘରକରଣା । ଦି' ପୁଅ ବରଜୁ ଓ ଛକଡ଼ି । ଦି' ବୋହୂ ହାରାବୋଉ ଓ ନେତ୍ରମଣି । କାଳିନ୍ଦୀଚରଣ ଏହି ଉପନ୍ୟାସରେ ଓଡ଼ିଆ ଚଷା ଶାମ ପଧାନ ଘରର ଛବି ଆଙ୍କିଛନ୍ତି । ଶାମ ପଧାନ ଯାହାକୁ ହାତଧରି ବାହା ହୋଇଥିଲା ସେ ଭାରି ଭଲ ମଣିଷ । ଚଷାଘର ଝିଅ ହେଲେ କ'ଣ ହେବ ମନଟା ତା'ର ଛୋଟ ନୁହେଁ । ତା'ର ଘରକରଣା ବି ଗାଁ ମାଇପଙ୍କ ଭିତରେ ପୁରାଣପରି ବୋଲାହୁଏ । ପଧାନ ବୁଢ଼ୀ ଧନ୍ୟ କହିବା ତାକୁ । ସେ ଖନ୍ଦୁରୀ ଘରଟି ଭିତରେ କେତେ ଘଡ଼ି, କେତେ କୁଞ୍ଚା ହାଣ୍ଡି, ମାଠିଆ, ଘୁମ, ସଜାଡ଼ିକରି ରଖିଛି । କାହିଁରେ ଅରୁଆ ପୁଞ୍ଜାଏ, କାହିଁରେ ଉଷୁନା ପୁଞ୍ଜାଏ, କାହିଁରେ ଖୁଦ ଗଣ୍ଡାଏ, କାହିଁରେ ମୁଗ, କାହିଁରେ ବିରି, କାହିଁରେ ସୋରିଷ, ସେଇ ବୋଲି ଶୁକୁଟୀ ଗାଈ ବକଟେ । କେଯାଏ ଦୁଧ ବା ଦେଉଛି । ସେଥିରୁ ସେ ଦହି ଗୋଳାଇ, ଲହୁଣି ମାରି, ଛୋଟ ଠେକିଟିରେ ଘିଅ ଟିକିଏ ଟିକିଏ ସାଇତି ରଖିଥିବ କୁଣିଆ ମଇତ୍ର, ଭଲଲୋକମନ୍ଦ ଲୋକଙ୍କ ପାଇଁ ।

ସରଦୀ ବୋଉ କହେ- 'ସେ କାରମଣିଷ ଆଉ ଏବକୁ ଦେଖିବାକୁ ମିଳିବେ ନାଇଁମ । ବୋଉ ଦି'ଟା ଘରେ ଶୋଇଥିବେ, ବୁଢ଼ୀ କାରୀ ଅନ୍ଧାରୁ ଉଠି ଘରଦ୍ୱାର ଲିପିପୋଛି ଏମିତି ନିଚିପଡ଼ କରିଥିବ ଯେ ତଳେ କୋଢ଼େଇ ଭାତ ଖାଇଗଲେ ତୁମକୁ ଅସୁକୁ ଲାଗିବ ନାଇଁ ।'

ଗ୍ରାମ୍ୟ କୃଷକ ଶାମ ପଧାନର ଘର ଥିଲା ସତ୍ୟ, ନ୍ୟାୟ, ଧର୍ମ ଓ ସ୍ନେହ ଶ୍ରଦ୍ଧାର ଏକ ନିରାପଦ କୁଟୀର । ବରଜୁର କର୍ମନିଷ୍ଠା, ସାଧୁତା ତଥା ଛକଡ଼ିର ସରଳ ସରସ କୋମଳ ହୃଦୟବତ୍ତା ନବଯୁବକ ସୁଲଭ ଚଞ୍ଚଳତା ଶାମ ପଧାନର ଘରକୁ ସୁଖଶାନ୍ତିମୟ କରି ରଖିଥିଲା । ଶାମ ପଧାନ ଚାଲିଗଲା ପରେ ବରଜୁହିଁ ବସ୍ତୁତଃ ଏପରି ଏକ ଏକାନ୍ନବର୍ତ୍ତୀ ପରିବାରରେ ମୁରବି ହୋଇଛି । ସାନଭାଇ ଛକଡ଼ିକୁ ବରଜୁ ଉଭୟ ବାପ ଓ ଭାଇର ସ୍ନେହ ଶ୍ରଦ୍ଧା ଦେଇଛି । ଗୋଟିଏ ଥାଳିରେ ଦୁଇଭାଇ ବସି ଭାତ ଖାଆନ୍ତି । ବରଜୁ ଆଗରେ ଛକଡ଼ି ଭରସି କିଛି କହିପାରେ ନାହିଁ । ସ୍ନେହ-ଭୀରୁ ମଣିଷଟିଏ ଏଇ ଛକଡ଼ି । ଓଡ଼ିଶାର ଚାଷୀ ପରିବାରର ଏକ ମନୋରମ ଛବି ହେଉଛି ମାଟିର ମଣିଷ ଉପନ୍ୟାସ ।

୧୯୩୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ କାଳିନ୍ଦୀଚରଣଙ୍କ 'ମୁକ୍ତାଗଡ଼ର କ୍ଷୁଧା' ତଥା 'ଅମର ଚିତା' (୧୯୩୩) ରେ ଯେଉଁ ଆଦର୍ଶବାଦ ଆମେ ଶୁଭକାନ୍ତଙ୍କ ନିକଟରେ ଲକ୍ଷ୍ୟକରୁ ତାହା ଜଣେ ପ୍ରଜାବତ୍ସଳ ହୃଦୟବାନ ରାଜାର । ପୁଣି ମାଟିର ମଣିଷରେ ଆମେ ଯେଉଁ ଉଦାରତା ଓ ତ୍ୟାଗଭାବ ଲକ୍ଷ୍ୟ କରୁ ତାହା ଥିଲା ବହୁଭାବରେ ଗାନ୍ଧିବାଦର ବିଷୟ । ଓଡ଼ିଶାର ସାଧାରଣ ସାମାଜିକ ଜୀବନରେ ଗାନ୍ଧିଜୀଙ୍କ ଅସହଯୋଗ ଓ ଅହିଂସାର ପ୍ରଭାବ ଅନେକଙ୍କୁ ପ୍ରୋତ୍ସାହିତ କରିଥିଲା । ଏପରିକି ଅଶିକ୍ଷିତ ଗ୍ରାମ୍ୟ କୃଷକ ମଧ୍ୟ ଗାନ୍ଧିଜୀଙ୍କ ଅହିଂସା ଆଦର୍ଶ ଦ୍ୱାରା ପ୍ରଭାବିତ ହୋଇଥିଲା । ଏହି ସମୟ ଖଣ୍ଡରେ କାଳିନ୍ଦୀଚରଣ ଗାନ୍ଧିଜୀଙ୍କ ଅହିଂସା ଓ ସତ୍ୟନିଷ୍ଠା ଦ୍ୱାରା ପ୍ରଭାବିତ ହୋଇ 'ମାଟିର ମଣିଷ' ଉପନ୍ୟାସର ପରିକଳ୍ପନା କରିଥିଲେ । ମାଟିର ମଣିଷ ଉପନ୍ୟାସ ରଚନାର ଆଦ୍ୟ ପ୍ରେରଣା ସେ କେଉଁଠୁ ଲାଭ କରିଥିଲେ, ସେ ତାହା ଉଲ୍ଲେଖ କରି ତାଙ୍କ 'ଅଙ୍ଗେ ଯାହା ନିଭାଇଛି'ରେ ଲେଖିଛନ୍ତି 'ମୂଳ ଗଳ୍ପଟିକୁ ଶୁଣିଥିଲି ପୁରୀ ଜିଲ୍ଲା ଡେଲାଙ୍ଗ କେନ୍ଦ୍ର ସମବାୟ ଷ୍ଟୋର ସାମନାରେ । ମୁଗ ବେଙ୍ଗଳା ପକାଉଥିବା ଜଣେ ସମିତିର ସଭ୍ୟଙ୍କ ମୁହଁରୁ । ନିଜ କାହାଣୀ ସଙ୍ଗେ ସାନଭାଇର ବ୍ୟବହାର କଥାଟା ମୋର ସେହିଦିନୁଁ ମନ ଭିତରେ ଲାଗି ରହିଥିଲା । କୁଜଙ୍ଗ, ପୁରୀ ଓ କଟକ ଜିଲ୍ଲାର ଗାଁ ଗାଁ ବୁଲି ସେହି କଥାଟି ମୁଣ୍ଡ ଭିତରେ ପାକଳ ଧରି ଯାଇଥାଏ । ତା' ସହିତ ଗାଁ ଜୀବନର କେତେ ବାସ୍ତବ ଚିତ୍ର ଆଖି ଆଗରେ ନାଚୁଥାଏ । ସେମିତି କଟକ ଜିଲ୍ଲାର ଗାଁ ଗାଁ ବୁଲୁଥିଲା ବେଳେ ବାଳକୃଷ୍ଣ ବାବୁଙ୍କ ବରାଦ ମନେ ପଡ଼େ । ଆଉ ଗଳ୍ପଟି ମୋର ମୁଣ୍ଡ ଭିତରେ ତା'ର ଛାଞ୍ଚ ବାନ୍ଧେ । ମନେପଡ଼େ ତା'ର ପରଠାରୁ ସାଇକେଲ ଚଢ଼ି କଟକ ଆସୁଥିବା ବାଟରେ 'ମାଟିର ମଣିଷ' ବହିର ପହିଲି ବି' ଧାଡ଼ି କବିତା ବୋଲି ବୋଲି ସାଇକେଲ ଚଳାଉଥିଲି ।

'ଦୁନିଆର ହାଟେ କୋଟି ହୀରା ନୀଳା
ମଣି ମାଣିକର ତୁଲ
ମାଟିର ପିତୁଳା ଗଢ଼ିରଖି ଦେଲି
କିଏ କରିବ ତା ମୂଲ ?'

ମୁଗ ବେଙ୍ଗଳା ପକାଉଥିବା ସମିତିର ସଭ୍ୟ ଜଣକ ନିଜର ସାନଭାଇ ସମ୍ପର୍କରେ ୧୯୩୦ ମସିହାରେ ଯାହା କହୁଥିଲା ଲେଖକ ତା'ର ଅବିକଳ ବିବରଣୀ ଦେଇ ଲେଖିଛନ୍ତି - 'ପଧାନ ପୁଅ ତାଙ୍କ ମନଜାଣି ଅବା, ହସି ହସି ପୁଣି ବୁଝାଇ କହେ ନିଜ ସାନ ଭାଇ କଥା - ତାକୁ ମୁଁ ପାଖେ ପାଖେ ରଖି ବଢ଼େଇଲି ମଣେଇଲି । ଶେଷକୁ ପରଶିଖାରେ ପୁଣି ତା'ର ଆପଣା ଘର ମଣିଷ ଶିଖାରେ ପଡ଼ି ସେ ଏକା ଜିଗର ଧଇଲା ଭିନ୍ନେ ହେବ, ଭଦ୍ରଲୋକ ଡାକି ଗାଁ ଟାଉଟରଙ୍କୁ ବସାଇ । ମୋର ତ' ବାପ ଗୋସାପ ଅର୍ଜିତ ଧନ । ଭଦ୍ରଲୋକ ପୁଣି କିଏ ? ତାଙ୍କୁ କାହିଁକି ଡାକି ଭାଗ ବାଣ୍ଟିବି ? ସାଫ୍ ସାଫ୍ ସାନଭାଇକୁ କହିଦିଏ - ଯାହା ଇଚ୍ଛା ତୋ'ର ତୁ ବାଣ୍ଟିନେ ଆଗ । ବାକି ଯାହା ବଳିବ ସେତିକି ରହିଲା ମୋର । ତା' ପରେ ଆଉ ହୁଅନ୍ତା କ'ଣ ବାବୁ ? ପୃଥକର ତହିଁ ଅକଳ ଗୁଡ଼ୁମ୍ । ଚାଉଳ ସେର କେତେ -- ନା ମୁଁ

ମଠରେ ଖାଏଁ । ପରଶିଖା ଯେତିକି ପାଇଥିଲା ସେତିକି ସିନା ! ଆଉ ବୁଦ୍ଧି ବତାଇବାକୁ କିଏ ? ଧାଇଁଲା ସିଧା ଘର ଭିତରକୁ । ନିଜ ଗାଁରେ ଅବିକଳ ସେଇ କଥା ଶୁଣେ ମୁଁ ନିଜ କୁଟୁମ୍ବଙ୍କ ମୁହଁରୁ । ପାଟି ତୁଣ୍ଡ କଜିଆଗୋଳ ନାହିଁ । ନିଜ ସାନଭାଇକୁ ସେ ତା'ର ଭାଗ ଛାଏଁ ବାଣ୍ଟି ନେବାକୁ କହନ୍ତି । କେବେ କେହି କିନ୍ତୁ କହିଥିବା ମୁଁ ଶୁଣିନି ଘର ଜମିବାଡ଼ି କିଛି ନ ବାଣ୍ଟି ସବୁ ଛାଡ଼ି ଆପେ ଆପଣା ଛୁଆ ପିଲା ଘେନି ଘରୁ ବାହାରି ଯିବାର ବିନା ସର୍ତ୍ତରେ ଏକାବେଳେ । ରାମାୟଣ କି ମହାଭାରତ ଯୁଗରେ ସିନା ମାତ୍ର କେତୁଟା ବର୍ଷ ପାଇଁ ବନବାସ ବା ଅଜ୍ଞାତବାସ କଥା ରହିଛି ; ଏ ଯେ ଏକାବେଳେ ବିନା ସର୍ତ୍ତରେ । ତଥାପି ସେହି ପ୍ରଶ୍ନବାଚୀ । ବରଜୁ ପଧାନ ତେବେ ଘରଛାଡ଼ି ଗଲା କୁଆଡ଼େ ? ଲୁହାର ମଣିଷରେ ତ ସେ ଆଉ ମିଳିଲା ନାହିଁ । ଭାରତବର୍ଷ ତ ଦି ଭାଗ ହେଲା । ଗାନ୍ଧିଙ୍କ ଛାତିରେ ଗୁଳି ବସିଲା । ଚଉଦବର୍ଷ ପରେ ରାମ ତ ଫେରିଲେ ବନବାସରୁ । ପୁଣି ବାରବର୍ଷ ପରେ ପଞ୍ଚୁପାଣ୍ଡବ - ରାବଣକୁ ମାରି, କୌରବକୁଳ ନିପାତ କରି ।

କିନ୍ତୁ ବରଜୁ, ପୁଣି ତା'ର ସାନଭାଇ ଛକଡ଼ି ? ହାରାବୋଉ ? ସବୁ ଗଲେ କୁଆଡ଼େ ? ହଁ ଗାନ୍ଧୀ ତ ବଞ୍ଚିଥାଉଁ ଥାଉଁ ଦେଶ ବିଭାଗ ହୁଏ । ବରଜୁ ସେମିତି ତା'ର ଚାଳିଆ ଘରଟା ନ ବାଣ୍ଟି ଗାଁରୁ ବିଦାୟ ନିଏ । ଦୁନିଆର ଅସମାପିକା । ତା'ରି ଭିତରେ ବରଜୁକୁ ଖୋଜି ବାହାର କରିବା ପାଇଁ ପ୍ରିୟ ପାଠକଙ୍କ ସହିତ ଲେଖକ ମଧ୍ୟ ପ୍ରସ୍ତୁତ ।

ମାଟିରମଣିଷ ଉପନ୍ୟାସରେ ତତ୍କାଳୀନ ଗାନ୍ଧିବାଦୀ ଚିନ୍ତାଧାରାର ଅଭିବ୍ୟକ୍ତି ନାନା ଭାବରେ ପରିଲକ୍ଷିତ ହୁଏ । ଉପନ୍ୟାସଟିର ବିଷୟପ୍ରସ୍ତରେ ଏହି ଗାନ୍ଧିବାଦୀ ଚିନ୍ତାଧାରା ଓ ଅହିଂସା ଆନ୍ଦୋଳନର ବହୁ ଇଙ୍ଗିତ ରହିଛି । ମୌନବ୍ରତ, ଅନଶନ, ବିନା ପ୍ରତିବାଦରେ ଗୃହତ୍ୟାଗ ଆଦି ଏହି ଗାନ୍ଧିବାଦୀ ଆଦର୍ଶର ଏକ ଏକ ପ୍ରମାଣ । ଓଡ଼ିଶାରେ ଉକ୍ତ ମାଟିର ମଣିଷ ଉପନ୍ୟାସଟି ବହୁଳ ଭାବେ ପଠିତ ଏକ ଲୋକପ୍ରିୟ ଉପନ୍ୟାସ । ଏଥିପାଇଁ ଏହାର ପଚିଶଟି ସଂସ୍କରଣ ହୋଇ ସାରିଛି । ଏହା ଓଡ଼ିଆ ଉପନ୍ୟାସ ପ୍ରକାଶନ ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା । ଶ୍ରୀମତୀ ଲୀଳା ରାୟ ଏହି ଲୋକପ୍ରିୟ ମାଟିର ମଣିଷ ଉପନ୍ୟାସର ଇଂରାଜୀ ଅନୁବାଦ କରିଛନ୍ତି "A House Undivided" ଶୀର୍ଷକରେ । ଏହି ମାଟିର ମଣିଷ ଉପନ୍ୟାସ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାତା ଓ ନିର୍ଦ୍ଦେଶକ ମୃଣାଳ ସେନ୍‌ଙ୍କୁ ଆକୃଷ୍ଟ କରିଥିଲା ଓ ବହୁଭାରତୀୟ ଭାଷାରେ ଏହାର ଅନୁବାଦ ହୋଇଛି ।

ଭାରତୀୟ କୃଷକ ଜୀବନର ନିଷ୍ଠା ଓ ଆଦର୍ଶ ଉକ୍ତ ଉପନ୍ୟାସରେ ବିଶେଷ ଭାବରେ ସୂଚିତ ହୋଇଛି । ମାଟିରେ ସୁନା ଫଳାଉଥିବା ମଣିଷଟି ହିଁ ଶ୍ରେଷ୍ଠ ମଣିଷ ଓ ତା'ର ଜୀବନ ସାର୍ଥକ । ଏମିତି ଏକ ବିଚାରଧାରା ମାଟିର ମଣିଷ ଉପନ୍ୟାସରେ ପରିଲକ୍ଷିତ ହୁଏ । ଏ ସମ୍ପର୍କରେ ନିଜେ ଔପନ୍ୟାସିକ ଲେଖିଛନ୍ତି - 'ଖାଲି ମାଟି, ମାଟି - ମାଟି ତାଙ୍କର ବେଉସା - ଜନମଠାରୁ ମରଣଯାଏ । ମାଟିରେ ଜନମ, ମାଟିରେ ଶୁଆ, ଉଠା, ବସା, ମାଟିରେ ଘର - ମାଟି ତାଡ଼ିଲେ ପେଟ ପୋଷେ, ମାଟିର ମଣିଷ..... ।' ମାଟି ସହିତ ମଣିଷର ସମ୍ପର୍କ

ଯେଉଁଠି ନିଦା ନୁହେଁ ଆଉ ମାଟି ଯେଉଁଠି ମଣିଷର ଭରସା ନୁହେଁ ସେଠି ମଣିଷ ଶ୍ରମକୁଣ୍ଠ ଓ ଅସାଧୁ ହୋଇ ବଞ୍ଚେ । ଔପନ୍ୟାସିକ କାଳିନ୍ଦୀଚରଣ ମାଟିରେ କାମ କରିବାକୁ ମଣିଷର ବଡ଼ ସାଧୁତା ଓ ସଂସ୍କାର ବୋଲି ବର୍ଣ୍ଣନା କରିଛନ୍ତି । 'ଲୁହାର ମଣିଷ' ଉପନ୍ୟାସରେ ବରଜୁ ଚରିତ୍ର ଚିତ୍ରଣ ଅବସରରେ ଲେଖିଛନ୍ତି - 'ନିଜ ଘରୁ ବାହାରି ଆସିଲା ବେଳେ ବରଜୁ କେଉଁଠିକି ଯିବ, କେଉଁଠି ରହିବ କିଛି ହେଲେ ଭାବି ନଥିଲା । ଛକଡ଼ି ଜିମା ଘର ଦୁଆର ଛାଡ଼ି ଆସିବା ସେତେବେଳେ ଖାଲି ସେ ଠିକ୍ ବୋଲି ବିଚାରିଥିଲା । ପରେ କ'ଣ କରିବ ସେଥିପାଇଁ ବେଶୀ ଭାବନା କରିବା କେବେହେଲେ ତା'ର ଅଭ୍ୟାସ ନୁହେଁ । ତାହାର ଅଭ୍ୟାସ ଖାଲି ଏତିକି ଯେ, ଯୁଆଡ଼େ ଯାଉ, କାମ କରିବ । ଗଣ୍ଡାଏ ଖାଇ ଖଣ୍ଡେ ପିନ୍ଧିବାକୁ ତାକୁ ଅଭାବ ହେବ ନାହିଁ । ଜନ୍ଦା ପିମ୍ପୁଡ଼ିକୁ ଖାଇବାକୁ ମିଳୁଛି । ଆଉ ସେ ମଣିଷ ହୋଇ କ'ଣ ଭୋକରେ ମରିବ ? ସେ ବୁଝିପାରେ ନାହିଁ କାହିଁକି ଲୋକେ ଉପାସରେ ମରନ୍ତି । ଅନ୍ଧ, କୁଡ଼ିଙ୍କ କଥା ସିନା ନିଆରା । ଦେହରେ ତାକତ ଥିବା ଯାକେ ଦୁନିଆଁ ଗୋଟାକ ତ ସବୁରି ପାଇଁ ପଡ଼ିଛି । ଭୋକ ଉପାସରେ ମରିବାର ଅଧିକାର ଜଣେ କାହାର ଅଛି କି ? କାହିଁକି ତେବେ ମଣିଷ ମରେ ।'

ବରଜୁ ପଧାନ ଜଣେ ଆଦର୍ଶ କୃଷକ । ଭାରି ପରିଶ୍ରମୀ ତଥା ସ୍ନେହଶୀଳ ବଡ଼ଭାଇ, ଯେ ସାନଭାଇ ଛକଡ଼ିକୁ ବାପର ମୃତ୍ୟୁପରେ ଉଭୟ ବାପ ଭାଇର ସ୍ନେହ ଦେଇଛି । ଛକଡ଼ିର ଯୁବକ ସୁଲଭ ରସିକତାକୁ ବରଜୁ ଘୃଣା ନକରି ଶ୍ରଦ୍ଧା କରିଛି । ଛକଡ଼ିର ଦାୟିତ୍ୱହୀନତାକୁ ବଡ଼ ଭାଇ ହିସାବରେ କ୍ଷମା କରିଦେଇଛି । ସମଗ୍ର ପରିବାରରେ ବରଜୁ ଗୋଟିଏ ଉଦାର ଓ ସ୍ନେହଶୀଳ ମଣିଷ । ଅଥଚ ସେପରି ଘରେ ସାନବୋହୂ ଛକଡ଼ିର ସ୍ତ୍ରୀ ନେତ୍ରମଣି ବିଦ୍ରୋହ କରିଛି ଓ ପୃଥକ ହୋଇଯିବା ପାଇଁ ଜିଦ୍ କରିଛି । ସେ ବରଜୁର ସ୍ତ୍ରୀ ହାରାବୋଉକୁ ସେ ପାଇଁ ସହିପାରିନି ଓ ତା ସହିତ ସବୁକଥାରେ କଳି କରିଛି । ଘରର ଏପରି ପରିସ୍ଥିତିରେ ବରଜୁ ବଡ଼ ଆଘାତ ପାଇଛି ଓ ଛକଡ଼ିକୁ ବୁଝାଇବାପାଇଁ ଚେଷ୍ଟା କରିଛି ; ଅଥଚ ଛକଡ଼ି ତାଙ୍କ ଗାଁର ଦୁଷ୍ଟବୁଦ୍ଧି ମାମଲତକାର ଟାଉଟର ହରି ମିଶ୍ରର ବୁଦ୍ଧି ଜାଲରେ ପଡ଼ିଯାଇଛି । ଏହି ଉପନ୍ୟାସର ଦୁର୍ଘଟଣା ହେଉଛି ହିଡ଼ମାଟି ହିଡ଼ରେ ଦେଇ ପରମ ଶାନ୍ତିରେ ଜୀବନ ନିର୍ବାହ କରୁଥିବା ଏକ କୃଷକ ପରିବାରର ବିଭାଜନ ଘଟାଇବା । ଏ ସମଗ୍ର କୃଷିପ୍ରଧାନ ଭାରତୀୟ ସମାଜରେ ଏକ ଦୁଃସ୍ଥିତି । ପରିଶେଷରେ ଅବସ୍ଥା ଅସମ୍ଭାଳ ହେବାରୁ ବରଜୁ ଅତ୍ୟନ୍ତ ଉଦାର ଭାବରେ ତା' ସ୍ତ୍ରୀ ଓ ପିଲାଛୁଆଙ୍କୁ ନେଇ ଘରଛାଡ଼ି ଚାଲିଯାଇଛି । ବରଜୁର ଏହି ଘରଛାଡ଼ି ଯିବା ବିଷୟଟି ବରଜୁର ଏକ ଉଦାର ମାନବୀୟ ଆଦର୍ଶ, ଯେଉଁ ଆଦର୍ଶକୁ ଔପନ୍ୟାସିକ କାଳିନ୍ଦୀଚରଣ ମାଟିର ମଣିଷ ଉପନ୍ୟାସରେ ଉଦ୍ଭାସିତ କରିଛନ୍ତି ।

'ଲୁହାର ମଣିଷ' ସେହିପରି କାଳିନ୍ଦୀଚରଣଙ୍କ ଅନ୍ୟ ଏକ ଉପନ୍ୟାସ, ଯେଉଁ ଉପନ୍ୟାସଟିକୁ ହୁଏତ ମାଟିର ମଣିଷ ଉପନ୍ୟାସଟିର ଦ୍ୱିତୀୟ ଭାଗ ବୋଲି କୁହାଯାଇପାରେ । କାରଣ ମାଟିର ମଣିଷ ଉପନ୍ୟାସର ପରିଣତି ଲୁହାର ମଣିଷ ଉପନ୍ୟାସରେ ଦେଖିବାକୁ ମିଳେ । 'ମାଟିର ମଣିଷ' ଉପନ୍ୟାସ ୧୯୩୧ ରେ ପ୍ରକାଶିତ ହୋଇଥିଲା ପରେ ତାର ଷୋହଳ

ବର୍ଷ ବ୍ୟବଧାନରେ ୧୯୪୭ ମସିହାରେ 'ଲୁହାର ମଣିଷ' ଉପନ୍ୟାସ ପ୍ରକାଶିତ ହୋଇଛି । ମାଟିର ମଣିଷର ବରଜୁ ପଧାନ ନିଜ ଘର ଛାଡ଼ି ହରିପୁରର ଗୌରାଙ୍ଗ ସେଣଙ୍କ ଘରେ ରହିଛି । ଲୁହାର ମଣିଷ ଉପନ୍ୟାସ ଓଡ଼ିଶା ତଥା ଭାରତୀୟ ସାମାଜିକ ଜୀବନର ବିବର୍ତ୍ତନକୁ ସୂଚିତ କରେ । ଭାରତୀୟ ମୁକ୍ତି ସଂଗ୍ରାମର ଇତିହାସ କେତେକାଂଶରେ ଲୁହାର ମଣିଷରେ ଦେଖିବାକୁ ମିଳେ । ଲୁହାର ମଣିଷ ଉପନ୍ୟାସର ଘରଛଡ଼ା ବରଜୁ ପଧାନକୁ ଗୌରାଙ୍ଗ ସେଣ ଅକୁଣ୍ଠିତ ଚିତ୍ତରେ ତା'ର ପିଲାପିଲିଙ୍କ ସହ ନିଜ ଘରେ ରଖିଛି । ବରଜୁ ସାନଭାଇ ସହିତ ସମ୍ପର୍କ ତୁଟାଇ ଆସିଥିବାରୁ ଦୁଃଖ ଓ ନିଃସଙ୍ଗତା ଭିତରେ ସମୟ କାଟୁଛି । ଅନ୍ୟ ପକ୍ଷରେ ଛକଡ଼ି ଭାଇର ବିଚ୍ଛେଦରେ ବ୍ୟଥିତ ହୋଇ ଗୌରାଙ୍ଗ ସେଣ ଘରେ ପହଞ୍ଚିଛି । ଛକଡ଼ିକୁ ଉଭୟ ବରଜୁ ଓ ଗୌରାଙ୍ଗ ସେଣ ବୁଝାଇଛନ୍ତି । ଛକଡ଼ି ଶେଷରେ ଘରକୁ ଫେରିଯାଇଛି । ଏହି ସମୟରେ ବରଜୁର ଝିଅ ହାରାର ପୁଅ ହୋଇଛି । ଗୌରାଙ୍ଗ ସେଣ ବରଜୁ ପରିବାରର ସୁଖଦୁଃଖ ହାନିଲାଭ ସବୁ ବୁଝିଛି । ବରଜୁର ପିଲାପିଲିଙ୍କୁ ପାଠପଢ଼ା ପାଇଁ ଗୌରାଙ୍ଗ ସେଣ ସ୍କୁଲ ଶିକ୍ଷକଙ୍କୁ ନିଯୁକ୍ତି କରିଛି ଓ ଗ୍ରାମବାସୀମାନେ ବରଜୁ ପଧାନ ଦ୍ୱାରା ପ୍ରଭାବିତ ହୋଇ ଅନ୍ୟାୟ ବିରୁଦ୍ଧରେ ଲଢ଼ିଛନ୍ତି । ଅନ୍ୟ ପକ୍ଷରେ ହରି ମିଶ୍ରର ଚକ୍ରାନ୍ତରେ ପଧାନ ପଡ଼ାର ଗ୍ରାମବାସୀମାନେ ପଡ଼ିଯାଇଛନ୍ତି ଓ ଛକଡ଼ି ମଧ ହରି ମିଶ୍ରର କୂଟଚକ୍ରାନ୍ତରୁ ବାଦ ଯାଇନି ।

ତା ପରେ ବରଜୁ ଭାରତୀୟ ଜାତୀୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଛି । ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିଛି । ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଅଖଟ ଚଳାଇଛି ଓ ସ୍ୱଦେଶ ଭାବଧାରାରେ ଉଦ୍‌ବୁଦ୍ଧ ହୋଇଛି । ବରଜୁ ପୁଣି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଛି ଓ ହାତରେ ଲୁହାର ଶିକୁଳି ପିନ୍ଧିଛି । ବରଜୁ ହାତରେ ଏହି ଲୁହାର ଶିକୁଳି ତାକୁ ସତେ ଯେପରି ଲୁହାର ମଣିଷରେ ପରିଣତ କରିଦେଇଛି । ସେ ସଂଗ୍ରାମରେ ଝାସ ଦେଇ ଲୁହା ପରି କଠିନ ହୋଇଛି । ଏହା ହିଁ ସାମଗ୍ରିକ ଭାବେ ଲୁହାର ମଣିଷର କଥାବସ୍ତୁ ।

କାଳିନ୍ଦୀଚରଣଙ୍କ 'ଆଜିର ମଣିଷ' ସେହି ପର୍ଯ୍ୟାୟର ଅନ୍ୟ ଏକ ଉପନ୍ୟାସ । ଏହି ଉପନ୍ୟାସଟି ଆପାତତଃ ମାଟିର ମଣିଷ ଓ ଲୁହାର ମଣିଷର ପରବର୍ତ୍ତୀ ଘଟଣାବଳୀ ମନେ ହେଉଥିଲେ ହେଁ ଏଥିରେ ଦିବାକର ବାବୁ ମୁଖ୍ୟ ଚରିତ୍ରଭାବେ ସଂଯୋଜିତ ହୋଇଛି । ବରଜୁ ପଧାନ ଓ ମାଟିର ମଣିଷ ଉପନ୍ୟାସର ଅନ୍ୟାନ୍ୟ ଚରିତ୍ର ଏହି ଉପନ୍ୟାସରେ ନାହାନ୍ତି । ଦିବାକର ବାବୁଙ୍କର ବିବାହ ଓ ବିବାହ ପରବର୍ତ୍ତୀ ଘଟଣାରାଜି ଏହି ଆଜିର ମଣିଷ ଉପନ୍ୟାସର କଥାବସ୍ତୁ ରୂପେ ଗଢ଼ି ଉଠିଛି । ଦିବାକର ବାବୁ ସାମାଜିକ ଗତାନୁଗତିକତାକୁ ପରିହାର କରି ଅସବର୍ଣ୍ଣ ବିବାହ କରିବା ପାଇଁ ବାହାରିଛନ୍ତି । ଦିବାକର ବାବୁ ନିଜ ସ୍ତ୍ରୀ ସାବିତ୍ରୀକୁ ଛାଡ଼ି କଲିକତା ଚାଲି ଯାଇଛି ଓ ସାବିତ୍ରୀ ଗାଁରେ ସଂସ୍କାରମୂଳକ କାର୍ଯ୍ୟରେ ଯୋଗଦେଇ ନିଜକୁ ଜଣେ ସମାଜସେବିକାରେ ପରିଣତ କରିଦେଇଛି ।

ଗୌରୀ ବୋଲି ଅନ୍ୟ ଏକ ନାରୀ ଦିବାକର ବାବୁଙ୍କ ଜୀବନ - ପରିଧି ଭିତରକୁ ଆସିଛି, ଯାହାର ବାପା ମଦନବାବୁ ନାରୀ ଶିକ୍ଷା ସପକ୍ଷରେ ନାନା କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ମଦନବାବୁ ଗାଁରେ ସ୍କୁଲ କରିଛନ୍ତି ଓ ସେହି ସ୍କୁଲରେ ଗୌରୀର ନାମ ଲେଖାଇ ଦେଇଛନ୍ତି । ଗୌରୀ ଅବିବାହିତା ହୋଇରହିଛି ଓ ଦେଶସେବାକୁ ନିଜ ଜୀବନର ବ୍ରତ କରିଛି । ସେ ସାମାଜିକ କୁସଂସ୍କାରକୁ ନଡରି ବାପାଙ୍କ ଆଦର୍ଶ ଦ୍ୱାରା ପ୍ରଭାବିତ ହୋଇ ନାରୀଶିକ୍ଷାର ପ୍ରଚାର ପ୍ରସାର ପାଇଁ ଶିକ୍ଷୟିତ୍ରୀ ରୂପେ କାର୍ଯ୍ୟ କରିଛି । ଏଇ ଗୌରୀର ଉଦ୍ୟମ ଫଳରେ ଦିବାକର ବାବୁ ସାବିତ୍ରୀ ସହିତ ମିଳିତ ହୋଇଛନ୍ତି ।

ଔପନ୍ୟାସିକ କାଳିନ୍ଦୀଚରଣ ଦିବାକର ଚରିତ୍ର ମାଧ୍ୟମରେ ନାନା ମନସ୍ତାତ୍ତ୍ୱିକ ସଂଶୟ ଓ ଦ୍ୱନ୍ଦ୍ୱର ଚିତ୍ରଣ କରିଛନ୍ତି । ଦିବାକର ବାବୁ ନିଜ ସ୍ତ୍ରୀକୁ ସନ୍ଦେହ କରିଛନ୍ତି ଓ ଶ୍ୱଶୁର ଘରର କଳଙ୍କିତ ଇତିହାସ ଦ୍ୱାରା ସ୍ତ୍ରୀଙ୍କ ମନ ପ୍ରଦୂଷିତ ହୋଇଥିବ ବୋଲି ସନ୍ଦେହ କରିଛନ୍ତି । ଦିବାକରଙ୍କର ମନ ଅସ୍ଥିର ହୋଇ ଉଠିଛି ଓ ସେ କ୍ରମଶଃ ସାବିତ୍ରୀ ଉପରେ ଅସହିଷ୍ଣୁ ହୋଇଛନ୍ତି । ତାଙ୍କର ପାରିବାରିକ ଜୀବନ ଅଶାନ୍ତ ହୋଇଥିବା ସତ୍ତ୍ୱେ ସେ ନିଜକୁ ଗ୍ରାମ୍ୟ ସଂଗଠନରେ ନିୟୋଜିତ କରିଛନ୍ତି । ସ୍ତ୍ରୀ ସାବିତ୍ରୀ କିନ୍ତୁ ସ୍ୱାମୀ ଦିବାକରଙ୍କ ସହିତ ସହଯୋଗ କରିପାରି ନାହିଁ । ଦିବାକର ତେଣୁ ସ୍ତ୍ରୀ ଉପରେ ଅସନ୍ତୁଷ୍ଟ ହୋଇ ଶେଷରେ ସ୍ତ୍ରୀକୁ ସନ୍ତୁଷ୍ଟ କରିବାପାଇଁ କଣ୍ଠାକୁର ହୋଇଛନ୍ତି । ଦିବାକରଙ୍କ ଦାମ୍ପତ୍ୟ ଜୀବନ କ୍ରମଶଃ ଅଶାନ୍ତ ଓ ଝଡ଼ଝଞ୍ଜାକୀର୍ଣ୍ଣ ହୋଇ ଉଠିଛି । ଯୁକ୍ତିତର୍କ ଓ ଦାମ୍ପତ୍ୟ କଳହ ଭିତରେ ଦିବାକର ବାବୁଙ୍କ ପରିବାର ଭାଙ୍ଗି ପଡ଼ିଛି । ସେ ସହରକୁ ଯିବାପାଇଁ ନିଷ୍ପତ୍ତି କରିଛନ୍ତି । ଅଥଚ ସହରର ଯାନ୍ତ୍ରିକ କୃତ୍ରିମ ପରିବେଶ ତାଙ୍କୁ ବାନ୍ଧିପାରୁନି ତଥା ଗାଁର ଆତ୍ମୀୟତାକୁ ସେ ଛାଡ଼ି ପାରୁନାହାନ୍ତି । ସେ ସହରକୁ ଚାଲି ଆସିଥିବା କାରଣରୁ ଗ୍ଲାନି ଅନୁଭବ କରିଛନ୍ତି ଓ ତାଙ୍କ ଗାଁ ବାରମ୍ବାର ମନେ ପଡ଼ିଛି ।

ଏହି ଉପନ୍ୟାସରେ ଗୌରୀ ଚରିତ୍ରଟି ଏକାନ୍ତ ଉଲ୍ଲେଖଯୋଗ୍ୟ । ଗୌରୀ ସାବିତ୍ରୀର ସହପାଠିନୀ, ଯାହା ଯୋଗୁଁ ସାବିତ୍ରୀ ଓ ଦିବାକର ବାବୁଙ୍କ ମିଳନ ସମ୍ଭବ ହୋଇଛି । ଶିକ୍ଷା ବିରୋଧୀ ଗ୍ରାମବାସୀମାନେ ଗୌରୀର ପାଠପଢ଼ାକୁ ବନ୍ଦ କରିବା ପାଇଁ ଗୌରୀର ପିତା ମଦନବାବୁଙ୍କୁ ପରାମର୍ଶ ଦେଇଛନ୍ତି । ଏପରିକି ଗାଁ ଲୋକମାନେ ବାରମ୍ବାର ସ୍କୁଲ ଘର ପୋଡ଼ି ଦେଇଛନ୍ତି । ଝିଅମାନେ ବେଶୀ ପାଠ ପଢ଼ିଲେ ସ୍ୱାମୀଙ୍କୁ ମାନିବେ ନାହିଁ ବୋଲି ନାରୀ-ଶିକ୍ଷାବିରୋଧୀ ଗ୍ରାମବାସୀମାନେ ଯୁକ୍ତି କରିଛନ୍ତି । ତୁହିନା ଏହି ଉପନ୍ୟାସର ଅନ୍ୟ ଏକ ଚରିତ୍ର ଯିଏ ଗୌରୀର ପ୍ରେମିକ । ତୁହିନା ଦିବାକର ବାବୁଙ୍କ ବାଲ୍ୟବନ୍ଧୁ ବିଧୁଶେଖରଙ୍କ ପୁଅ । ଗୌରୀ ଓ ତୁହିନାର ସମ୍ପର୍କକୁ କେନ୍ଦ୍ରକରି ଗାଁରେ ବଡ଼ ଅଶୋଭନୀୟ କାଣ୍ଡ ଘଟିଛି । ଗାଁର ବହୁଲୋକ ଗୌରୀ ନାଁରେ କୁତ୍ସା କରିଛନ୍ତି ଓ ବେନାମୀ ଚିଠି ବାଣ୍ଟିଛନ୍ତି । ବିଧୁଶେଖର ବର୍ମା ଚାଲିଯାଇଛନ୍ତି ଓ ସେଠାରେ ଯୁଦ୍ଧବନ୍ଦୀ ହୋଇ ଅଟକି ରହିଛନ୍ତି । ଗୌରୀ ତୁହିନାକୁ ବିବାହ କରିଛି ଓ ପରେ ଗାଁକୁ ଫେରି ଆସି ଗୌରୀ ଶିକ୍ଷୟିତ୍ରୀ କାର୍ଯ୍ୟ କରିଛି ।

ଗୌରୀ ଓ ସାବିତ୍ରୀ ଉଭୟ ପୁଣି ଗାଁର ଶିକ୍ଷାବିଦ୍ୱେଷୀମାନଙ୍କ ଷଡ଼ଯନ୍ତ୍ରର ଶିକାର ହୋଇଛନ୍ତି । ସାବିତ୍ରୀ ଗାଁରେ ଏକାକୀ ରହିଛି ଓ ଗୌରୀ ତାକୁ ସହାୟତା କରିଛି । ପୁଣି

ଦିବାକର ବାବୁ ସହରରୁ ଫେରି ଆସିଛନ୍ତି । ଦିବାକର ବାବୁ ସାବିତ୍ରୀ ଭିତରେ ବହୁତ ପରିବର୍ତ୍ତନ ଲକ୍ଷ୍ୟ କରିଛନ୍ତି । ଗାନ୍ଧିଜୀଙ୍କ ମୃତ୍ୟୁ ସମ୍ବାଦ ସାବିତ୍ରୀ ଶୁଣି ବିଶେଷ ମର୍ମାହତ ହୋଇଛି । ଗୌରୀ ଯୋଗୁଁ ଦିବାକରବାବୁ ଓ ସାବିତ୍ରୀଙ୍କ ମଧ୍ୟରେ ପୁନର୍ମିଳନ ସମ୍ଭବ ହୋଇଛି । ଏହାହିଁ କାଳିନ୍ଦୀଚରଣଙ୍କ ଆଜିର ମଣିଷ ଉପନ୍ୟାସର ସମଗ୍ର କଥାବସ୍ତୁ ।

କାଳିନ୍ଦୀଚରଣଙ୍କ ଉପନ୍ୟାସ ମୁଖ୍ୟତଃ ତାଙ୍କ ସମାଜ- ସଚେତନତା ଓ ଜୀବନବାଦୀ ଦୃଷ୍ଟିଭଙ୍ଗୀର ପରିଚାୟକ । ଓଡ଼ିଶାର ବିପୁଳ ଗ୍ରାମ୍ୟ ଜୀବନକୁ ପ୍ରାଣଭରି ଭଲପାଇବାର ହାର୍ଦ୍ଦିକତା ତାଙ୍କ ଉପନ୍ୟାସରେ ପ୍ରତିଫଳିତ ।

କାଳିନ୍ଦୀଚରଣଙ୍କ ମାଟିର ମଣିଷ, ଲୁହାର ମଣିଷ ଓ ଆଜିର ମଣିଷରେ ଓଡ଼ିଶାର ସାମାଜିକ ବିବର୍ତ୍ତନ ସୂଚିତ । ଔପନ୍ୟାସିକ କାଳିନ୍ଦୀଚରଣ ମାଟିର ମଣିଷ ଓ ଲୁହାର ମଣିଷକୁ ତା'ର ପ୍ରଭାବ ଓ ଆବେଦନରେ ଏକ ଗ୍ରାମ୍ୟ କୃଷକ ପରିବାରର ଭ୍ରାତୃବିବାଦରେ ମାତ୍ର ସୀମିତ ରଖିଦେଇ ନାହାନ୍ତି । ସେଥିରେ ଜାତୀୟ ଓ ଆନ୍ତର୍ଜାତିକ ଘଟଣାର ସୂଚନା ରହିଛି । ସାମାଜିକ ପରିବର୍ତ୍ତନର ଆଭାସ ରହିଛି । ଏପରିକି ଅମର ଚିତା ଓ ମୁକ୍ତାଗଡ଼ର କ୍ଷୁଧା ମଧ୍ୟ ଆଦୌ କାହାଣୀସର୍ବସ୍ୱ ଉପନ୍ୟାସ ନୁହେଁ ।

ତାଙ୍କ ଉପନ୍ୟାସରେ ମଣିଷର ସାମାଜିକ ତଥା ସାଂସ୍କୃତିକ ଇତିହାସର ଯେଉଁ ଇଙ୍ଗିତ-ମାନ ରହିଛି ତାହା ହିଁ ପ୍ରକୃତରେ ମୂଲ୍ୟବାନ । ଜଣେ ବଡ଼ ଔପନ୍ୟାସିକ କେବେ କେଉଁଠି ଖାଲି ପାତ୍ରପାତ୍ରୀଙ୍କୁ ଲେଖେ ନାହିଁ କି ଖାଲି କାହାଣୀ ବି ସୃଷ୍ଟି କରେ ନାହିଁ । ତା' ସହିତ ସାମାଜିକ ଗତି ଓ ବିସ୍ତାରର ଅର୍ଥପୂର୍ଣ୍ଣ ଇଙ୍ଗିତମାନ ଥାଏ, ଯାହା ଅଧିକାଂଶରେ କାଳିନ୍ଦୀଚରଣଙ୍କ ଉପନ୍ୟାସରେ ପରିଲକ୍ଷିତ ।

କାଳିନ୍ଦୀଚରଣ ପୁଣି ମଣିଷର ଶାଶ୍ୱତ ଜୀବନ ବଞ୍ଚିବାକୁ ତାଙ୍କ ଉପନ୍ୟାସମାନଙ୍କରେ ଚିତ୍ରଣ କରିଛନ୍ତି । କୌଣସି ସାମାଜିକ, ରାଜନୀତିକ ସମସ୍ୟା ନୁହେଁ, ମଣିଷର ଏକାନ୍ତ ଅପରିବର୍ତ୍ତନୀୟ ଜୀବନ ବଞ୍ଚିବାକୁ ସେ ଉଦ୍ଭାସିତ କରିଛନ୍ତି । ଶୋଷଣ କଷଣ ସତ୍ତ୍ୱେ ଜୀବନ ସୁନ୍ଦର ବୋଲି ସେ ମନେକରିଛନ୍ତି । ମଣିଷ ଜୀବନର ପୀଡ଼ା ଓ ବଞ୍ଚନା ଆଦିକୁ ଲେଖିଥିବା କାଳିନ୍ଦୀଚରଣ ମଣିଷ ଜୀବନର ସ୍ୱପ୍ନ, ସୌନ୍ଦର୍ଯ୍ୟାନୁଭୂତି ଓ ସ୍ନେହଶୀଳତାକୁ ମଧ୍ୟ ଲେଖିଛନ୍ତି । ପରିଶେଷରେ ଏତିକି କୁହାଯାଇପାରେ ଯେ କାଳିନ୍ଦୀଚରଣ ଥିଲେ ଯଥାର୍ଥରେ ଜଣେ ଜୀବନବାଦୀ ଶିଳ୍ପୀ ।

# ଗାଳ୍ପିକ କାଳିନ୍ଦୀଚରଣ

କାଳିନ୍ଦୀଚରଣଙ୍କ କବିତା ଉପନ୍ୟାସ ବାହାରେ ତାଙ୍କ ଗଳ୍ପ ମଧ୍ୟ ତାଙ୍କ ସହିତ୍ୟିକ ଜୀବନର ଆଉ ଏକ ସମୃଦ୍ଧ ଦିଗ । ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ରଚନା କ୍ଷେତ୍ରରେ ତାଙ୍କର ଅବଦାନ କିଛି କମ୍ ନୁହେଁ ।

ତାଙ୍କର 'ଦ୍ୱାଦଶୀ' 'ରାଶିଫଳ' ଓ 'ସାଗରିକା' ଗଳ୍ପଗ୍ରନ୍ଥ ତାଙ୍କୁ ଓଡ଼ିଶାର ଅଗଣିତ ପାଠକପାଠିକାଙ୍କ ନିକଟରେ ପରିଚିତ କରାଇଛି । ତାଙ୍କ ଗଳ୍ପରେ ପାଠକ ମୁଖ୍ୟତଃ ପ୍ରଗତିବାଦୀ ସ୍ୱରକୁ ଲକ୍ଷ୍ୟକରେ । କାଳିନ୍ଦୀଚରଣ ଯେପରି ଜଣେ ବିଶିଷ୍ଟ ମାନବବାଦୀ ଶିଳ୍ପୀ, ସେହିପରି ଜଣେ ସମାଜ ସଚେତନ ସାହିତ୍ୟ ସ୍ରଷ୍ଟା । ସେ ସବୁଜ ଗୋଷ୍ଠୀର ଜଣେ ପ୍ରମୁଖ କବି ହୋଇଥିଲେ ହେଁ, ତାଙ୍କର ସାମାଜିକ ଅଙ୍ଗୀକାରବଦ୍ଧତା ରହିଛି ଓ ଏକ ସୁନ୍ଦର ସମୃଦ୍ଧ ସମାଜ ଗଠନର ସ୍ୱପ୍ନ ତାଙ୍କ ଗଳ୍ପଗୁଡ଼ିକରେ ପ୍ରତୀକିତ ହୋଇଛି । କିଛି ସମାଜ ସଂସ୍କାର ଚେଷ୍ଟା ମଧ୍ୟ ସେ ଗଳ୍ପ ଜରିଆରେ କରିଛନ୍ତି । ଅଥଚ ତାଙ୍କ ଗଳ୍ପଗୁଡ଼ିକ ପ୍ରଗତିବାଦୀ ଲେଖକଙ୍କ ଲେଖାପରି ପ୍ରତ୍ୟକ୍ଷଭାବେ ପ୍ରଚାରଧର୍ମୀ ହୋଇନାହିଁ । ତାଙ୍କ ଗଳ୍ପଗୁଡ଼ିକରୁ ପ୍ରଚାର ଉଦ୍ଦେଶ୍ୟ ଆଦୌ ବାରିହୁଏ ନାହିଁ ।

ଫକିରମୋହନୋତ୍ତର ଓଡ଼ିଆ ଗଳ୍ପଧାରାକୁ ସେ ବହୁ ଗଳ୍ପ ରଚନାକରି ପୁଷ୍ଟ କରିଯାଇଛନ୍ତି । ତାଙ୍କ ଗଳ୍ପର ବିଷୟବୈଚିତ୍ର୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ । ସେ ବିବିଧ ବିଷୟକୁ ନେଇ ଗଳ୍ପ ରଚନା କରିଛନ୍ତି । କବିତା ଓ ଉପନ୍ୟାସ ପରି ଗଳ୍ପରେ ମଧ୍ୟ ସେ ମଣିଷ ଓ ତା'ର ପରିବେଶକୁ ଅଧିକ ମୁଖ୍ୟ କରି ଚିତ୍ରଣ କରିଛନ୍ତି । ସାହିତ୍ୟ ତାଙ୍କର ଏକ ମନ୍ମୟ ବିଳାସର ବିଷୟ ନଥିଲା ; ଥିଲା ମଣିଷ ଭିତରେ ଥିବା ସମସ୍ତ ସୃଜନଶୀଳ ଇଚ୍ଛା, ତା' ଭିତରେ ଥିବା ବ୍ୟଥା, ସ୍ୱପ୍ନ ଭଙ୍ଗ, ହାହାକାର ଓ ନିଃସଙ୍ଗତା ସବୁକୁ ନିଖୁଣ ଭାବରେ ଲେଖିବାର ଶୁଭ ସଂକଳ୍ପ । ଶିଳ୍ପୀଜୀବନରେ ଏହି ସଂକଳ୍ପ ତାଙ୍କୁ ଯେଉଁ ନିମଗ୍ନମାନତା ଆଣି ଦେଇଛି, ତାହା କଥାଶିଳ୍ପର ଭାବଭାଷାକୁ ଏତେ ମାର୍ମିକ କରିପାରିଛି ।

କାଳିନ୍ଦୀଚରଣଙ୍କ କବିତା ଓ ଉପନ୍ୟାସ ପରି ଗଳ୍ପର ଭାବଭାଷା ସେଥିପାଇଁ ଏତେ ପ୍ରାଣସ୍ପର୍ଶୀ ହୋଇଛି ଓ ସେ ପଲ୍ଲୀ ଗ୍ରାମର ମୌଖିକ ଭାଷାକୁ ତାଙ୍କ ଅଭିବ୍ୟକ୍ତିର ମାଧ୍ୟମ କରିଛନ୍ତି ।

ସେ ଥିଲେ ସେହିଭଳି ଗ୍ରାମ୍ୟ ଜୀବନ ଚିତ୍ରଣରେ ଜଣେ ବିଶିଷ୍ଟ ଗାଳ୍ପିକ । ତାଙ୍କ ଉପନ୍ୟାସ ଓ କବିତାରେ ଯେଉଁ ଦରିଦ୍ର ନିପୀଡ଼ିତ ମଣିଷର ଛବି ଅଙ୍କିତ ହୋଇଛି ସେହି ବ୍ୟଥା ବେଦନାର ଛବିକୁ ଆମେ ଅନ୍ୟ ଏକ ଆଙ୍ଗିକରେ କେବଳ ତାଙ୍କ ଗଳ୍ପରେ ଦେଖିଛୁ । ତାଙ୍କ ଗଳ୍ପ ସଂକଳନଗୁଡ଼ିକ ମଧ୍ୟରେ 'ଶେଷରଶ୍ମି' 'ଦ୍ୱାଦଶୀ' 'ରାଶିଫଳ' 'ସାଗରିକା' ତଥା 'ମୋ କଥାଟି ସରିନାହିଁ' ପ୍ରଭୃତି ଅଧିକାଂଶ ଗଳ୍ପରେ ସେହି ସାଧାରଣ ମଣିଷର କଥା ହିଁ କୁହାଯାଇଛି ।

'ମାଂସର ବିଳାପ' ଗଳ୍ପ ତାଙ୍କର ସବୁଠାରୁ ଶକ୍ତିଶାଳୀ ଗଳ୍ପ । ଏହା ଦେଶ ବିଦେଶର ବହୁ ଭାଷାକୁ ଅନୁଦିତ ହୋଇଛି ଓ ଅନେକଙ୍କ ଶ୍ରଦ୍ଧା ଓ ସ୍ୱୀକୃତି ଲାଭ କରିଛି । ଗଳ୍ପଟି ଗୋଟିଏ ଇଂରାଜୀ ଗ୍ରେହାଉଣ୍ଡ କୁକୁର ଡୋରା ଓ ଜଳି ବୋଲି ଗୋଟିଏ କୃଷ୍ଣସାର ମୃଗ ଶାବକ ମଧ୍ୟରେ ନିବିଡ଼ ପ୍ରେମର କଥା କୁହାଯାଇଛି । ପଶୁ ମଧ୍ୟରେ ଏତେ ସ୍ନେହ ବନ୍ଧୁତା, ଏତେ ନିବିଡ଼ ମମତାବୋଧକୁ ଦେଖି ମଣିଷର ଆଖି ଲୋତକାପ୍ଲୁତ ହୁଏ । ଏହି ଗଳ୍ପର ଆବେଦନ ପାଠକର ହୃଦୟକୁ ଏତେ ଗଭୀର ଭାବେ ସ୍ପର୍ଶ କରେ ଯେ, ପାଠକ ନକାନ୍ଦି ରହିପାରେ ନାହିଁ । କାଳିନ୍ଦୀଚରଣଙ୍କ 'ମାଟିର ମଣିଷ' ଉପନ୍ୟାସ ପରି ଏହି 'ମାଂସର ବିଳାପ' ଗଳ୍ପଟିକୁ ମଧ୍ୟ ଚଳଚ୍ଚିତ୍ର ରୂପ ଦିଆଯାଇଛି ଓ ସମଗ୍ର ଭାରତରେ ଏହା ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଛି । ଏହା ଭାରତର କାହିଁକି ବିଶ୍ୱ ସାହିତ୍ୟର ଯେକୌଣସି ଉଚ୍ଚକୋଟୀର ଗଳ୍ପ ସହିତ ତୁଳନୀୟ ।

କାଳିନ୍ଦୀଚରଣଙ୍କ ଗଳ୍ପଗୁଡ଼ିକ ଉପରେ ଫକିରମୋହନଙ୍କ ପ୍ରଭାବ ଏତେ ସ୍ପଷ୍ଟ ନୁହେଁ । ଯଦିଓ କାଳିନ୍ଦୀଚରଣଙ୍କ ଗଳ୍ପଗୁଡ଼ିକ ଅଧିକାଂଶରେ ଫକିରମୋହନଙ୍କ ଗଳ୍ପପରି ବର୍ଣ୍ଣନାଧର୍ମୀ, ସମସ୍ୟାପ୍ରଧାନ ଓ ପଲ୍ଲୀକୈନ୍ଦ୍ରିକ । ଗୋଦାବରୀଶ ମହାପାତ୍ର, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ପ୍ରମୁଖଙ୍କ ଗଳ୍ପ ଓ କାଳିନ୍ଦୀଚରଣଙ୍କ ଗଳ୍ପ ମଧ୍ୟରେ କିଛି ସାମ୍ୟ ଥିବା ପାଠକ ଲକ୍ଷ୍ୟ କରେ । କାଳିନ୍ଦୀଚରଣ ତାଙ୍କ ଅଧିକାଂଶ ଗଳ୍ପରେ ଫକିରମୋହନଙ୍କ ପରି ଲୋକକଥିତ ଭାଷା ବ୍ୟବହାର କରିଥିଲେ ହେଁ ନୂତନ ସଂକେତ ବ୍ୟବହାର କରି ରଚନାଶୈଳୀକୁ ଅଧିକ କାବ୍ୟିକ କରିପାରିଛନ୍ତି । 'ବିଟଘର ଓ ରେଳଗାଡ଼ି' (୧୯୩୩) ଗଳ୍ପଟି ଓଡ଼ିଆ କ୍ଷୁଦ୍ରଗଳ୍ପ ମଧ୍ୟରେ ଗୋଟିଏ ଉଚ୍ଚକୋଟୀର ଗଳ୍ପ । ଫକିରମୋହନଙ୍କ ପରେ ଓଡ଼ିଆ ଗଳ୍ପକୁ ଯଥାସମ୍ଭବ ଅଧିକ ଜୀବନନିଷ୍ଠ କରି ତାକୁ ଲୋକପ୍ରିୟ କରାଇବାରେ କାଳିନ୍ଦୀଚରଣ ଜଣେ ଦକ୍ଷ ଗାଳ୍ପିକ । ସେ ବିଶେଷ ଧରଣର ଚିତ୍ରକଳ୍ପ ପ୍ରୟୋଗ କରି ତାଙ୍କ ରଚନାଶୈଳୀକୁ କିପରି ଅଧିକ କାବ୍ୟିକ କରିପାରିଥିଲେ ତାହା ତାଙ୍କ 'ବିଟଘର ଓ ରେଳଗାଡ଼ି', ଗଳ୍ପର ପାଉଁଶବୋଳା ବୈରାଗୀ ପରି ଖଣ୍ଡିଏ ଧୂଳିଆ କଚ୍ଚା ସଡ଼କ ଧାଡ଼ିରୁ ଜଣାପଡ଼େ । ଏ ପ୍ରସଙ୍ଗରେ ଓଡ଼ିଶାର ବିଶିଷ୍ଟ ସମାଲୋଚକ ସୁରେନ୍ଦ୍ର ମହାନ୍ତି ଅଭିମତ ଦେଇ କହନ୍ତି - 'କାଳିନ୍ଦୀଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକ କିନ୍ତୁ ତଳିଆ ଜୀବନ ସହିତ କାଳିନ୍ଦୀଙ୍କ ନିବିଡ଼ ପରିଚୟର ସ୍ୱାକ୍ଷର ବହନ କରିଛି । କବିତାରେ କାଳିନ୍ଦୀ ଯେତିକି ରୋମାଣ୍ଟିକ, କ୍ଷୁଦ୍ରଗଳ୍ପରେ ସେତିକି ବାସ୍ତବବାଦୀ ।'

'ମୋ କଥାଟି ସରିନାହିଁ', 'ବାଦୀପାଲା', 'ବିଟଘର ଓ ରେଳଗାଡ଼ି', 'ରୁଦ୍ରାକ୍ଷ', 'ହୃଦୟ' 'ନିଶିଥିନୀ', 'ଡାଆଣୀ ବୁଢ଼ୀ', 'ଓଡ଼ିଶାରେ ମହାଯୁଦ୍ଧ', 'ଆରମ୍ଭ ଓ ଶେଷ', 'ମଣିମା', 'ରଶ୍ମିରେଖା' ଆଦି ଅଧିକାଂଶ ସାମାଜିକ ଗଳ୍ପ । କାଳିନ୍ଦୀଚରଣଙ୍କ ଆରମ୍ଭ ଓ ଶେଷ, ଛିନ୍ନପୃଷ୍ଠା ଗଳ୍ପ ଦୁଇଟି ପ୍ରଥମ ପୁରୁଷ ଆଙ୍ଗିକରେ ରଚିତ ଠିକ୍ ଆତ୍ମଜୀବନୀମୂଳକ ଶୈଳୀରେ । ଜଣେ ବଡ଼ ଶିଳ୍ପୀ ଗଳ୍ପ କବିତା ପରି ବନ୍ଧ ଓ ବିଭବ ଉର୍ଦ୍ଧ୍ୱରେ ନିଜକୁ ହିଁ ପ୍ରକଟନ କରିଥାନ୍ତି ।

ତାଙ୍କ 'ଆରମ୍ଭ ଓ ଶେଷ' ଗଳ୍ପରୁ ଏହି ପ୍ରସଙ୍ଗରେ କେତେକ ଧାଡ଼ି ଉଦ୍ଧାର କରାଯାଇପାରେ ।

'ବର୍ତ୍ତମାନ ମୋ ଜୀବନ, ପ୍ରତୀଚୀର ପୂରବୀରଞ୍ଜିତ । ବିଶ୍ୱର ସକଳ ପଥର ସୀମା ଯେଉଁଠାରେ ଅଦ୍ଭୁତ ରୀତିରେ ବିଲୀନ, ଆଜି ସେହିଠାରେ ଛୋଟ ନାତିଟି ମୋର ଘର ସାମନା ଫୁଲ ବଗିଚାରେ ପ୍ରଜାପତି ସଙ୍ଗେ ଖେଳୁଛି । ଗୃହିଣୀ ମୋ ନିକଟରେ ବସି ଭାଗବତ ପାଠ କରୁଛନ୍ତି । ପଶ୍ଚାତକୁ ଦୃଷ୍ଟି ଫେରାଇଲେ ସଂସାରପଟରେ ଅସଂଖ୍ୟ ସମ୍ବନ୍ଧ ଆଜି ଗୋଟିଏ ଚିତ୍ର ଭଳି ଝୁଲୁଛି । ପୁତ୍ର, ଜାମାତା, ଛାତ୍ର, ଖେଳୁଆଡ଼, ଦେଶସେବକ, ସୁବକ୍ତା, ଗାୟକ, କିରାନି, ମାଷ୍ଟର, ଅଭିନେତା, ପିତା, ପିତାମହ ଇତ୍ୟାଦି, ଏହାବାଦ୍ ଜ୍ଞାତସାରରେ ଅବା ଅଜ୍ଞାତରେ କେତେ ବନ୍ଧୁ ପରିଚିତ ପ୍ରିୟଜନଙ୍କୁ ମୋ ନିଜର କରି ନେଇଛି । କିନ୍ତୁ ମୁଁ ନିଜେ କ'ଣ ? ଉତ୍ତର କେବଳ ମିଳୁଛି - ମୁଁ ମୁଁ । ମୁଁ ରେ ହିଁ ଆରମ୍ଭ ଓ ମୁଁ ରେ ହିଁ ଶେଷ ।'

'ମାଂସର ବିଳାପ' ଗଳ୍ପଟି ଯେପରି ଦୁଇ ମାନବେତର ଚରିତ୍ର ଚିତ୍ରଣ କରିଥାରେ ନିବିଡ଼ ବନ୍ଧୁତ୍ୱର ପ୍ରତୀକ ଚିତ୍ର ।

କାଳିନ୍ଦୀଚରଣଙ୍କ ଗଳ୍ପଗୁଡ଼ିକ ୧୯୩୫ ରୁ ୧୯୪୭ ମସିହା ମଧ୍ୟରେ ପ୍ରକାଶିତ । 'ଦ୍ୱାଦଶୀ' 'ରାଶିଫଳ' 'ଶେଷରଶ୍ମି' 'ସାଗରିକା' 'ମୋ କଥାଟି ସରିନାହିଁ' ପ୍ରଭୃତି ତାଙ୍କର ପ୍ରସିଦ୍ଧ ଗଳ୍ପଗ୍ରନ୍ଥ । ତାଙ୍କ ଗଳ୍ପଗୁଡ଼ିକ ଅଧିକାଂଶରେ ସାମାଜିକ ବାସ୍ତବତାକୁ ପ୍ରକଟନ କରିଛି । ତାଙ୍କ ଗଳ୍ପର ବିଷୟବସ୍ତୁ ମୁଖ୍ୟତଃ ସେହି ଭାବରେ ହିଁ ବିନ୍ୟସ୍ତ ହୋଇଛି । 'ଅପରାଧିନୀ' 'ଛିନ୍ନପୁଷ୍ପା' 'ଦାମ୍ପତ୍ୟଚିତ୍ର' 'ରୁଦ୍ରାକ୍ଷ' 'ପଙ୍ଗୁ' 'ଜୟହିନ୍ଦ୍' 'ଉପହାର' 'ଅଟଳ ବିଶ୍ୱାସ' 'ରାଜେଶ୍ୱରର ଦୁଇଟି ବନ୍ଧୁ' 'ଚକ ବୁଲୁଥାଏ' 'ମଣିମା' 'ଦ୍ୱିତୀୟାଚାନ୍ଦ' 'ସାବିତ୍ରୀର ଦୁଃଖ' ଆଦି ଗଳ୍ପଗୁଡ଼ିକ ସାମାଜିକ ଚିତ୍ର ସମ୍ବଳିତ । 'ଅଟଳ ବିଶ୍ୱାସ' ଗଳ୍ପଟି ଫକିରମୋହନଙ୍କ 'ରାଣ୍ଡିପୁଅ ଅନନ୍ତା' ଗଳ୍ପପରି । ସଦା ଗୋଟିଏ ନିରୀହ ନିର୍ବୋଧ ବାଳକ ଯେ ମଇଁଷି ପିଠିରେ ଚଢ଼ି ପାଞ୍ଚଣ ହାତରେ ଧରି ସବୁବେଳେ ଝୁଲି ଝୁଲି ଆସେ । ବହୁକୁଟୁମ୍ବୀ ଅଥଚ ସ୍ୱଳ୍ପ ଜମିଥିବା କାରଣରୁ ସଦା ଭଲକରି ଗଣ୍ଡେ ଖାଇବାକୁ ପାଏନି କି ପିନ୍ଧିବାକୁ ପାଏନି । ସଦା ଗୋଟିଏ ନିଷ୍କର୍ମା ଚରିତ୍ର । ସବୁବେଳେ ଘରେ ବାହାରେ ସେ ସମସ୍ତଙ୍କ ଦ୍ୱାରା ଉପହସିତ ଓ ଅତ୍ୟାଚାରିତ ମଧ୍ୟ ହୋଇଛି । ସଦା ଚରିତ୍ର ଚିତ୍ରଣ ଭିତରେ ଗାଳ୍ପିକ କାଳିନ୍ଦୀଚରଣ ଶହ ଶହ ଗ୍ରାମ୍ୟ ଯୁବକର ନିପୀଡ଼ିତ ଜୀବନଛବି ଆଙ୍କିଛନ୍ତି । ସେହିପରି ତାଙ୍କର ଆଉ ଗୋଟିଏ ଗଳ୍ପ ହେଉଛି 'ଉପହାର' । ଉପହାର ଗଳ୍ପଟି ଅନ୍ୟତମ ସଫଳ ଗଳ୍ପ । ଭାଇଭାଇ ମଧ୍ୟରେ ନିଷ୍କପଟ ସ୍ନେହ ଏହି ଗଳ୍ପରେ ପ୍ରତିପାଦିତ ହୋଇଛି । ପିତାଙ୍କର ପୁତ୍ର ପ୍ରେମ, ଭାଇଭାଇଙ୍କ ମଧ୍ୟରେ ଗଭୀର ମମତ୍ୱବୋଧ ପାଠକର ହୃଦୟକୁ ବିଚଳିତ କରିଦିଏ । ମଧୁବାବୁ ନାମକ ଏକ ବିପତ୍ନୀକ ଓକିଲଙ୍କର ଦୁଇପୁତ୍ର ପ୍ରଫୁଲ୍ଲ ଓ ବସନ୍ତ । ପିତାଙ୍କର ଦ୍ୱିତୀୟ ବିବାହ ହେଉ ବୋଲି ତାଙ୍କର ଦୁଇପୁତ୍ର ଚାହିଁଛନ୍ତି ଓ ପ୍ରଫୁଲ୍ଲ ମନରେ ଏଥିପାଇଁ ନାନା ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ଜଣେ ଆତ୍ମୀୟଙ୍କ ବିବାହ ଉତ୍ସବରେ ଯୋଗ ଦେବାକୁ ଯାଇ ପ୍ରଫୁଲ୍ଲ ଦୁର୍ଘଟଣାଗ୍ରସ୍ତ ହୋଇଛି ଓ ପିତାଙ୍କ ବିବାହ ପାଇଁ ଉପହାର ଦେବାକୁ କିଣିଥିବା କର୍ପୁରମାଳଟିକୁ ସାନଭାଇ ବସନ୍ତକୁ ପିନ୍ଧାଇ ଦେଇଛି ଏବଂ ଶେଷରେ ଅସୁସ୍ଥତାବଶତଃ ପ୍ରଫୁଲ୍ଲର ମୃତ୍ୟୁ ହୋଇଛି । ତା' ପରେ ବସନ୍ତର ବିବାହ ଦିନ

ବସନ୍ତଙ୍କ ପିତା ମଧୁବାବୁ ପ୍ରଫୁଲ୍ଲର କର୍ପୂରମାଳା ଉପହାରକୁ ମନେ ପକାଉଛନ୍ତି ଓ ବସନ୍ତ ବେକରେ ସେହି ମାଳାଟିକୁ ଝୁଲାଇ ଦେଇ କହିଛନ୍ତି ଏଇଟି ତୋ ବଡ଼ଭାଇର ଉପହାର । ଏହି ଗଳ୍ପଟି ସାମଗ୍ରିକ ଭାବେ ଏକ ପାରିବାରିକ ଆତ୍ମୀୟତା ଓ ଆବେଗିକ ସଂପର୍କ ଉପରେ ଆଧାରିତ ।

ତାଙ୍କର 'ଅପରାଧିନୀ' ଗଳ୍ପଟି ଏକ ସଂସ୍କାର ମୂଳକ ଗଳ୍ପ । ଏ ଗଳ୍ପଟି ଉପରେ ଗାନ୍ଧିଜୀ ଓ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପରି ମହାତ୍ମାଙ୍କ ବିଧବା ବିବାହ ପ୍ରଚଳନ ଆଦର୍ଶର ପ୍ରଭାବ ପ୍ରତିଫଳିତ ହୋଇଛି । ଗାଳ୍ପିକ ତାଙ୍କ ପ୍ରସିଦ୍ଧ 'ମାଟିର ମଣିଷ' ଉପନ୍ୟାସରେ ଯେପରି ଗାନ୍ଧିବାଦୀ ଭାବଧାରାର ପ୍ରଚାର କରିଛନ୍ତି - ଏହି ଗଳ୍ପରେ ସେହିପରି ଗାନ୍ଧିଜୀଙ୍କ ଅନ୍ୟତମ ବିଧବା ବିବାହର ଆଦର୍ଶକୁ ପ୍ରତିଫଳନ କରିଛନ୍ତି । ସୁଷମା ସ୍ୱାମୀ ଘରେ କିପରି ନିର୍ଯାତିତା ହୋଇଛି ଓ ପିତାମାତାଙ୍କ ଦ୍ୱାରା ମଧ ଭର୍ତ୍ସିତା ହୋଇଛି, ତା'ର ଏକ କରୁଣ ଚିତ୍ର ଆଙ୍କିଛନ୍ତି ଗାଳ୍ପିକ କାଳିନ୍ଦୀଚରଣ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଦ୍ୱାରା ପ୍ରଭାବିତ ହୋଇ ନବଯୁବକ ନବୀନ ସୁଷମାକୁ ଗ୍ରହଣ କରିଛି ଓ  ଗଳ୍ପଟିରୁ ଏକ ଗାନ୍ଧିବାଦୀ ଆଦର୍ଶର ପରିଚୟ ମିଳେ ।

କାଳିନ୍ଦୀଚରଣଙ୍କ ଗଳ୍ପର ବିଷୟ -ପରିସର ଅତ୍ୟନ୍ତ ବ୍ୟାପକ । ପ୍ରେମ, ବିପ୍ଲବ, ସମାଜ ସଂସ୍କାର, ମାନବୀୟ ଗୁଣାବଳୀ, ଶ୍ରେଣୀ, ଶୋଷଣ ସବୁକିଛି ତାଙ୍କ ଗଳ୍ପରେ ଚିତ୍ରିତ ହୋଇଛି । ପ୍ରେମିକ ଗଳ୍ପଟି କାଳିନ୍ଦୀଚରଣଙ୍କର ଅନ୍ୟତମ ସାର୍ଥକ ଗଳ୍ପ; ଯେଉଁଥିରେ ସପ୍ତତି ବର୍ଷ ବୟସ୍କ ଜଣେ ଶିଳ୍ପୀର ଭାବପ୍ରବଣତା ପ୍ରତୀକିତ ହୋଇଛି ।

ସେହିପରି 'ମଣିମା' ଗଳ୍ପ ଗୋଟିଏ ଅବକ୍ଷୟଗ୍ରସ୍ତ ସାମନ୍ତ ପରିବାରର ଚିତ୍ର । ଓଡ଼ିଶାର ସର୍ବତ୍ର ଏଇ ସାମନ୍ତମାନେ କିପରି କାଳକ୍ରମେ ବିତ୍ତହୀନ ହୋଇଯାଇଛନ୍ତି, ସେହି ଦାରୁଣ ଅବକ୍ଷୟର କରୁଣ ଚିତ୍ରଟିଏ ସତେ ଯେପରି ଲେଖକ ତାଙ୍କ ମଣିମା ଗଳ୍ପରେ ଆଙ୍କିଛନ୍ତି । ସାମନ୍ତ ପରିବାରଟି ବିଳାସବ୍ୟସନରେ କାଳଯାପନ କରି ଯେତେ ବେଳେ ଋଣଗ୍ରସ୍ତ ହୋଇ ନିଃସ୍ୱ ହୋଇଗଲେ ସେତେବେଳେ ତାଙ୍କ ଉପରେ ନିର୍ଭର କରୁଥିବା ତାଙ୍କ ଘରର ଚାକର ପୂଜାରୀମାନେ କିପରି ସେମାନଙ୍କୁ ଉଣ୍ଡିଛନ୍ତି ତା'ର ଏକ ନିଚ୍ଛକ ଚିତ୍ର ଅଙ୍କନ କରି ଗାଳ୍ପିକ ସାମନ୍ତ ପରିବାରର ପରିକଳ୍ପନାକୁ ରୂପାୟିତ କରିଅଛନ୍ତି ।

'ଦ୍ୱିତୀୟା ଚାନ୍ଦ' ଅନ୍ୟ ଏକ ସାମାଜିକ ଗଳ୍ପ । ନାରୀଟିଏ କିପରି ଲକ୍ଷ୍ମୀପ୍ରତିମା ପରି ନିଜର ସ୍ୱାମୀକୁ ଧନଧାନ୍ୟର ପ୍ରାଚୁର୍ଯ୍ୟ ଆଣିଦିଏ, ତାହା 'ଚାନ୍ଦ' ଚରିତ୍ର ଭିତରେ ଲେଖକ ବର୍ଣ୍ଣନା କରିଛନ୍ତି । ସ୍ୱାମୀ ଦ୍ୱିତୀୟାଠାରୁ ଚାନ୍ଦ ଅଧିକ କଷ୍ଟସହିଷ୍ଣୁ ଓ ବୁଦ୍ଧିମତୀ । ସେ ଦ୍ୱିତୀୟା ଘରକୁ ସ୍ତ୍ରୀ ହୋଇ ଆସିବାଠାରୁ ଘରେ ଧାନ ଚାଉଳର ସାମାନ୍ୟତମ ଅଭାବ ପରିଲକ୍ଷିତ ହୋଇନି । ଘରର ସବୁକଥାରେ ପ୍ରାଚୁର୍ଯ୍ୟ ଦେଖାଦେଇଛି । ଅଥଚ ଆମ ପାରିବାରିକ ଜୀବନର ବାସ୍ତବ ଚିତ୍ର ପ୍ରଦାନ କରି ଗାଳ୍ପିକ ଶାଶୂ ବୋହୂ କଳହର ଚିତ୍ର ଦେଇଛନ୍ତି । ଶାଶୂ ବୋହୂ କଳି ଆମ ପାରିବାରିକ ଜୀବନର ଅନ୍ୟ ଏକ ବାସ୍ତବତା ଯେପରି । ସ୍ୱାମୀଟିଏ ଏ କଳିରେ ନାଁ ତା'ର ଶଯ୍ୟାସଙ୍ଗିନୀ ପତ୍ନୀର ଗୋଟାପଣେ ହୋଇପାରେ ନା ତା' ଜନ୍ମଦାତ୍ରୀ ମା'ର ହୋଇପାରେ ? ଦ୍ୱିତୀୟା କିଂକର୍ତ୍ତବ୍ୟବିମୂଢ଼ ହୋଇ ତା'ର ଶ୍ୱଶୁର ଘରକୁ ବାରମ୍ବାର ଯାଇଛି

ସ୍ତ୍ରୀକୁ ଆଣିବା ପାଇଁ । ଏ ପ୍ରକାର ଘଟଣା ଯାହା ଅଧିକାଂଶ ନିମ୍ନ ମଧ୍ୟବିତ୍ତ ପରିବାରରେ ପରିଲକ୍ଷିତ ହୁଏ ।

'ଜୟହିନ୍ଦ' କାଳିନ୍ଦୀଚରଣଙ୍କ ଅନ୍ୟ ଏକ ଗଳ୍ପ ; ଯେଉଁଥିରେ ଆପାତ ଭଦ୍ର ବୋଲାଉଥିବା ସମାଜର ପ୍ରଭାବଶାଳୀ ମଣିଷର ବିଟତ୍ୱ ବର୍ଣ୍ଣିତ ହୋଇଛି । ପୁରୁଷର ଏହି ଲାମ୍ପଟ୍ୟ ସବୁ କାଳରେ ନାରୀକୁ କେବଳ ଦୁଃଖ ଅପମାନ ଦେଇନାହିଁ, ସମାଜର ନାନା ଦୁଃସ୍ଥିତିର କାରଣ ମଧ୍ୟ ହୋଇଛି । ଜୟହିନ୍ଦ୍ ଗଳ୍ପରେ ଗାଳ୍ପିକ ଦେଶ ରକ୍ଷା କରିବା ପାଇଁ ଯାଇଥିବା ସତ୍ୟାନନ୍ଦର ସ୍ତ୍ରୀ ନୂପୁରୀର ବିଡ଼ମ୍ବିତ ଜୀବନ ଚିତ୍ର ଆଙ୍କିଛନ୍ତି । କାନଗୋଇ ବାବୁ ଯେ ବୟସରେ ବହୁତ ବର୍ଷୀୟାନ, ସେ ଯେ ସତ୍ୟାନନ୍ଦର ସ୍ତ୍ରୀ ନୂପୁରୀପ୍ରତି ଏତେ କାମାସକ୍ତ ହୋଇପଡ଼ିବେ, ତାଙ୍କର ସେହି ରୁଗ୍ଣ ଅସୁସ୍ଥ ବିଟତ୍ୱକୁ ଗାଳ୍ପିକ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । କି ସହର କି ମଫସଲ ସର୍ବତ୍ର ଆମ ତଥାକଥିତ ବଡ଼ବଡ଼ିଆଙ୍କ ପାଶବିକ ପ୍ରବୃତ୍ତି ବହୁ ସାମାଜିକ ଦୁଃଖ ଓ ଦୁଃସ୍ଥିତି ସୃଷ୍ଟି କରୁଛି ।

କାନଗୋଇ ବାବୁ ଶେଷରେ ନୂପୁରୀଠାରୁ ମାଡ଼ଖାଇ ଫେରିଛନ୍ତି । ନୂପୁରୀ ନିଜର ମାନସିକ ଶକ୍ତି ଓ ସତୀତ୍ୱର ପରିଚୟ ଦେଇଛି । ଏ ଦୁଃଖ ସବୁ ସମୟରେ କମ୍ ବେଶୀରେ ଯେପରି ଲାଗିରହିଛି । ଏସବୁ ଗଳ୍ପ କାଳିନ୍ଦୀଚରଣଙ୍କ ସାମାଜିକ ସଚେତନତାର ପରିଚୟ ଦିଏ । କେତେକ ମାନବୀୟ ଆଦର୍ଶ ଓ ମୂଲ୍ୟବୋଧ ପ୍ରତି ଗାଳ୍ପିକ ସତେ ଯେପରି ବିଶେଷ ଭାବେ ପ୍ରତିଶ୍ରୁତିବଦ୍ଧ ।

ସେହିପରି ତାଙ୍କର 'ସାବିତ୍ରୀର ଦୁଃଖ' ଅନ୍ୟ ଏକ ମନସ୍ତାତ୍ତ୍ୱିକ ଗଳ୍ପ ; ଯେଉଁଥିରେ ନାରୀର ବିକ୍ଷତ ଜୀବନଚିତ୍ର ଅଙ୍କିତ ହୋଇଛି । ଏ ଗଳ୍ପର ନାୟିକା ସାବିତ୍ରୀର ଜୀବନ କିପରି ଦୁଃଖ ଓ ଆଘାତ ଭିତରେ କଟିଛି ତା'ର ଚିତ୍ର ଏଠାରେ ପ୍ରଦତ୍ତ ହୋଇଛି । ତାଙ୍କର ଅନ୍ୟାନ୍ୟ ଗଳ୍ପମାନଙ୍କ ମଧ୍ୟରେ 'ଚକ ବୁଲୁଥାଏ' ଅନ୍ୟ ଏକ ସାମାଜିକ ଗଳ୍ପ ; ଯେଉଁଥିରେ ପରିବର୍ତ୍ତନଶୀଳ ସାମାଜିକ ବିବର୍ତ୍ତନର ସୂଚନା ମିଳେ ।

କାଳିନ୍ଦୀଚରଣଙ୍କ ଅଧିକାଂଶ ଗଳ୍ପରେ ନାରୀଜୀବନ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ବେଦନଶୀଳତା ଅଧିକ ବ୍ୟକ୍ତ ହୋଇଛି । ଲେଖକ ମନେ କରିଛନ୍ତି - ନାରୀ ପ୍ରତି ସାମାଜିକ ସମ୍ମାନବୋଧ ହେଉଛି ଯଥାର୍ଥରେ ସାମାଜିକ ବିକାଶର ଲକ୍ଷଣ । ନାରୀପ୍ରତି ଅସମ୍ମାନ ଓ ଅବହେଳା ପ୍ରଦର୍ଶନ କରି କୌଣସି ସମାଜ ବିକଶିତ ହୋଇପାରିନାହିଁ । ମାନବୀୟ ଦୟା, ବିବେକ, ଶ୍ରଦ୍ଧା ଓ ସହାନୁଭୂତିଶୀଳତା ଭିତରେ ମଣିଷ ମଣିଷକୁ ଲୋଡ଼ୁ, ଏହା ଥିଲା ଗାଳ୍ପିକ କାଳିନ୍ଦୀଚରଣଙ୍କ ଉପଲବ୍ଧିର ବିଷୟ । ପୂର୍ବରୁ ସୂଚିତ ହୋଇଛି - 'ଦ୍ୱାଦଶୀ' 'ରାଶି ଫଳ' 'ସାଗରିକା' ଆଦି ଗଳ୍ପ ଗ୍ରନ୍ଥରେ କେତେକ ମାନବେତର ଚରିତ୍ର ଥିବା ଗଳ୍ପ ରହିଛି ; ଯାହା ଅଧିକ ହୃଦୟସ୍ପର୍ଶୀ ଓ ସୁଖପାଠ୍ୟ । ତା ଭିତରେ ଏକ ମାଷ୍ଟରପିସ୍ ହେଉଛି ତାଙ୍କର ମାଂସର ବିଳାପ ଗଳ୍ପ । ଯାହା ଭାରତୀୟ ଜାତୀୟ ସାହିତ୍ୟ କ୍ଷେତ୍ରରେ ଏକ ଅନବଦ୍ୟ ସୃଷ୍ଟି । ପୂର୍ବରୁ ହିତୋପଦେଶ, ପଞ୍ଚତନ୍ତ୍ର ଓ ଜାତକ ଗଳ୍ପମାନଙ୍କରେ ଯେପରି ପଶୁପକ୍ଷୀମାନଙ୍କୁ ଚରିତ୍ର

କରାଯାଇଛି ଓ ସେମାନଙ୍କୁ ନେଇ ଯଥାର୍ଥରେ କାହାଣୀ ଗତିଶୀଳ ହୋଇଛି, ସେହିପରି କାଳିନ୍ଦୀଚରଣ ତାଙ୍କର 'ମାଂସର ବିଳାପ' ଓ 'ପଙ୍ଗୁ' ଗଳ୍ପ ଦୁଇଟିକୁ ଏହି ମାନବେତର ଚରିତ୍ର ଭିତିରେ ରଚନା କରିଛନ୍ତି । ଅବଶ୍ୟ ଓଡ଼ିଆ ସାହିତ୍ୟରେ 'ଚତୁର ବିନୋଦ' ଏକ ଗଳ୍ପଗ୍ରନ୍ଥ, ଯେଉଁଥିରେ ପଶୁପକ୍ଷୀ ଆଦି ବହୁ ମାନବେତର ଚରିତ୍ର ସଂଯୋଜିତ ହୋଇଚନ୍ତି । 'ମାଂସର ବିଳାପ' ଗଳ୍ପ ଏହାର ଲୋକପ୍ରିୟତା କାରଣରୁ ବହୁ ଭାରତୀୟ ଭାଷାକୁ ଅନୂଦିତ ହେବା ସଙ୍ଗେ ସଙ୍ଗେ ଇଂରାଜୀରେ ମଧ୍ୟ ଏକାଧିକ ଅନୁବାଦ ହୋଇଛି । 'ମାଂସର ବିଳାପ' ଗଳ୍ପର ଭାବ-ଚେତନା, ମାନବୀୟ ଆଦର୍ଶ ପରିପ୍ରେକ୍ଷୀରେ ଅଧିକ ସୂକ୍ଷ୍ମ ଓ ସମ୍ବେଦନଶୀଳ । କାଳିନ୍ଦୀଚରଣଙ୍କ ଶିଳ୍ପୀ ଜୀବନର ଗଭୀର ମାନବିକତା ଏହି ଗଳ୍ପର ଆବେଦନରେ ହିଁ ସତେ ଯେପରି ପିଣ୍ଡିତ ହୋଇଛି । ପୂର୍ବରୁ ସୂଚିତ ହୋଇଛି ଯେ, ଗୋଟିଏ କୁକୁର ଓ ଗୋଟିଏ ହରିଣୀର ବନ୍ଧୁତା ବିଷୟକୁ ନେଇ ପ୍ରସିଦ୍ଧ 'ମାଂସର ବିଳାପ' ଗଳ୍ପ ରଚିତ । ଜମିଦାରବାବୁ ପାଳନକର୍ତ୍ତା ଭାବେ ସମସ୍ତ ସ୍ନେହଶୀଳ ସମ୍ପର୍କ ଭୁଲି କୃଷ୍ଣସାରର ମାଂସ ପାଇଁ ତାକୁ ଯେପରି ହତ୍ୟାକଲେ, ଅନ୍ତତଃ ପଶୁ ହେଲେ ହେଁ ତା'ର ବନ୍ଧୁ ବିଦେଶୀ ଗ୍ରେହାଉଣ୍ଡ କୁକୁରଟି ପ୍ରତିବାଦ କରିଛି । କୁକୁର କୃଷ୍ଣସାରର ମାଂସତ ଭକ୍ଷଣ କରିନି ବରଂ ଭୟଙ୍କର ଚିତ୍କାର କରି ତା'ର ପ୍ରତିବାଦ କରିଛି । ପଶୁ ହେଲେ ହେଁ କୁକୁର ନିକଟରେ ସ୍ନେହପ୍ରବଣତା ଓ ସମ୍ବେଦନଶୀଳତା ଏକାନ୍ତ ଅନୁପମ । ଯାହା ସମ୍ଭ୍ରାନ୍ତ ଜମିଦାରଙ୍କ ହୃଦୟରେ ଏକାନ୍ତ ଦୁର୍ଲଭ । ଏହି ଗଳ୍ପଟି ମନୁଷ୍ୟର ହିଂସ୍ର ସ୍ୱଭାବ କିପରି ପ୍ରାଣୀଙ୍କ ଅପେକ୍ଷା ବି ଭୟଙ୍କର ଓ ବିକୃତ ତାହା ହିଁ ପ୍ରମାଣ କରିଛି ।

କୁକୁର ଭଳି ପଶୁଟିଏ ଯଦି ବନ୍ଧୁତାକୁ ମୂଲ୍ୟଦେଇ ପାରିଛି ଅଥଚ ମଣିଷ ସ୍ନେହ-ପାଳିତ ପଶୁଟିକୁ ନିର୍ମମଭାବେ ହତ୍ୟା କରିବା ପାଇଁ ଆଦୌ କୁଣ୍ଠିତ ହୋଇନାହିଁ ; ଏହି ଚିତ୍ର ଅଙ୍କନ କରି ଗାଳ୍ପିକ ଏକ ବିରୋଧାଭାଷର ହିଁ ସୂଚନା ଦେଇଛନ୍ତି । ମଣିଷ ଯେହେତୁ ଏକ ଉନ୍ନତ ପ୍ରାଣୀ ସେ ଅନ୍ୟାନ୍ୟ ଅନେକ ଇତର ପଶୁଙ୍କଠାରୁ ଅଲଗା । ସେ ହେତୁ ମଣିଷଠାରୁ ଢଣେ କୋମଳ ବ୍ୟବହାର ଆଶା କରିବା ସ୍ୱାଭାବିକ । ପଶୁ ହୁଏତ ଇତରତା କାରଣରୁ ହିଂସ୍ର ଓ ନିଷ୍ଠୁର ହୋଇପାରେ ; ମାତ୍ର ମାଂସର ବିଳାପ ଗଳ୍ପରେ ଘଟିଛି ଠିକ୍ ତା'ର ଓଲଟା । ଆଚରଣରେ ପଶୁ କୋମଳ ହୋଇଛି ଅଥଚ ମଣିଷ ହୋଇଛି ନିଷ୍ଠୁର ।

ଏ ଗଳ୍ପଟିର ପରିକଳ୍ପନା ପଶ୍ଚାତ୍‌ରେ ଗାଳ୍ପିକଙ୍କ ମାନବୀୟ ମୂଲ୍ୟବୋଧ- ସଚେତନତା ପରିଲକ୍ଷିତ ହୁଏ । ଏହି ଗଳ୍ପଟି ପାଇଁ କାଳିନ୍ଦୀଚରଣ କେବଳ ଓଡ଼ିଆ ସାହିତ୍ୟରେ କାହିଁକି ସମଗ୍ର ଭାରତୀୟ ସାହିତ୍ୟରେ ମଧ୍ୟ ବେଶ୍ ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି । ସେଥିପାଇଁ ଗଳ୍ପଟି ଏତେ ଲୋକପ୍ରିୟ ହୋଇଛି ଓ ତାହା ବହୁ ଭାଷାକୁ ଅନୂଦିତ ହେବା ସଙ୍ଗେ ସଙ୍ଗେ ଚଳଚ୍ଚିତ୍ରରେ ରୂପାୟିତ ହୋଇଛି ।

ସେହିପରି ମାନବେତର ଚରିତ୍ରକୁ ନେଇ କାଳିନ୍ଦୀଚରଣଙ୍କ ଅନ୍ୟ ଏକ ଗଳ୍ପ ହେଉଛି 'ପଙ୍ଗୁ' । 'ପଙ୍ଗୁ' ତା'ର ପରିବାର ନିକଟରେ ଅତ୍ୟନ୍ତ ଘୃଣିତ, ଅଥଚ ତା'ର ଦୁଇବନ୍ଧୁ ତା'ର ପରମ ସାଥୀ ହୋଇଛନ୍ତି । ପରିବାରର ନିର୍ଯ୍ୟାତନା ଘୃଣା ସହି ନପାରି ପଙ୍ଗୁ ଶେଷରେ

ଗୃହ ଛାଡ଼ି ଚାଲିଯାଇଛି । କାଣୀ କୁତୀ ଓ ଛୋଟୀ ବିରାଡ଼ି କିନ୍ତୁ ତା'ର ସହଯାତ୍ରୀ ହୋଇଛନ୍ତି । ପଙ୍ଗୁ ବାଳକଟି ବଣି ଛୁଆଟିକୁ ପାଣିରୁ ଉଦ୍ଧାର କରିବାକୁ ଯାଇ ପାଣିରେ ବୁଡ଼ି ମରିଛି । ତା' ସହିତ ତାକୁ ଉଦ୍ଧାର କରିବାକୁ ଯାଇ ତା'ର ସାଥୀ କାଣୀ କୁତୀଟି ମଧ୍ୟ ମୃତ୍ୟୁବରଣ କରିଛି । ଶେଷରେ ବଂଚିଛି କେବଳ ଛୋଟୀ ବିରାଡ଼ିଟି ତା'ର ସ୍ନେହଶୀଳ ବନ୍ଧୁର ବିଚ୍ଛେଦ ଦୁଃଖକୁ ଅଶ୍ରୁମୋଚନ ଭିତରେ ନିତି ସ୍ମରଣ କରିବା ପାଇଁ । ଏ ଜୀବନ ସ୍ନେହ-ପ୍ରେମ-କରୁଣା-ସଂପର୍କର ରସାମୃତରେ ବଂଚେ ଓ ଆନନ୍ଦ ପାଏ । ମନୁଷ୍ୟହିଁ ଏହି ସ୍ନେହ-ପ୍ରେମ-କରୁଣାର ଅଧିକାରୀ ବୋଲି ଆମେ ଜାଣୁ । କିନ୍ତୁ ବିଡ଼ମ୍ବନାର କଥା, ବହୁବେଳେ ଗୋଟିଏ ଛୋଟୀ ବିରାଡ଼ି ଅପାଂକ୍ତେୟ ପ୍ରାଣୀଟିଏ ହେଲେ ହେଁ ସେ ଭଲ ପାଉଥିବା ପଙ୍ଗୁ ମଣିଷଟିର ମୃତ୍ୟୁରେ ନୀରବ କ୍ରନ୍ଦନ କରିପାରେ । କାଳିନ୍ଦୀଚରଣଙ୍କ 'ମାଂସର ବିଳାପ' ଗଳ୍ପପରି 'ପଙ୍ଗୁ' ଗଳ୍ପଟି ମଧ୍ୟ ଗଭୀର କରୁଣରସାଶ୍ରିତ । ଏହି ଦୁଇଟି ଗଳ୍ପ ପଢ଼ି ମରମୀ ପାଠକର ଅନ୍ତର ଶୋକାପ୍ଲୁତ ହୋଇଯାଏ— ତାର ମୁଖ୍ୟ କାରଣ ହେଲା ମନୁଷ୍ୟ ନିଜର ନୀଚତାକୁ ବୁଝିପାରେ ଓ ନିଜର ହୃଦୟହୀନତା ପାଇଁ ଅନୁତାପ କରେ । ମନୁଷ୍ୟ ହୋଇ ଜନ୍ମିବାର ଗୌରବବୋଧରୁ ସେ ତା'ର ଏହି ଆତ୍ମକୃତ ପାପ ପାଇଁ ବଂଚିତ ହୋଇଯିବାର ବେଦନା ଅନୁଭବ କରେ । ଜମିଦାର ବାବୁ ଯେଉଁ ପ୍ରଚଣ୍ଡ ଆତ୍ମଗ୍ଲାନିରେ ଜର୍ଜରିତ ହୋଇଛନ୍ତି ଗାଳ୍ପିକ ସେ ବିଷୟରେ ସୂଚନା ଦେଇ ଲେଖିଛନ୍ତି- 'ଏହି ଜ୍ଞାନଶୂନ୍ୟ କୁକୁରଟାର ପାଦତଳେ ପଡ଼ି କ୍ଷମାଭିକ୍ଷା କରିବା ଲାଗି ତାଙ୍କ ପ୍ରାଣଭିତରୁ ଯେପରି କିଏ ବାଧ କରୁଛି । କାରଣ ସେ ନିଜକୁ ତା'ଠାରୁ ବହୁ ନିମ୍ନରେ ଦେଖୁଛନ୍ତି । କାହିଁ ମାଂସାଶୀ କୁକୁରଠାରୁ କ'ଣ ମୋ ଅନ୍ତର ଏତେ ନୃଶଂସ ? ଛି, ଛି, ସଂସାରଟାରେ କ'ଣ କେବଳ ସବଳ ଦୁର୍ବଳକୁ ଅଧୀନ ରଖି, ଆତ୍ମସାତ୍ କରି, ଉଦରସାତ୍ କରି ଜୀବନଧାରଣ କରିବାକୁ ଜାତ ହୋଇଛି ? ଜଣେ ବଞ୍ଚିବ ବୋଲି ଆଉ ଜଣକର ମୃତ୍ୟୁ ଏକାନ୍ତ ଆବଶ୍ୟକ । ମନୁଷ୍ୟ ଯେ ବିଶ୍ୱଗ୍ରାସ କରିବାକୁ ବସିଛି, ଏହାର ଯୁକ୍ତି କ'ଣ ନା ସେ ସବୁଜୀବଠାରୁ ବୁଦ୍ଧିମାନ୍ ଓ ବିବେକବାନ୍ ।

କାଳିନ୍ଦୀଚରଣଙ୍କର ଅନ୍ୟ ଏକ ପ୍ରଭାବଶାଳୀ ଗଳ୍ପ ହେଉଛି 'ରେଙ୍ଗୁନ୍‌ଯାତ୍ରୀ ।' ଏହି ଗଳ୍ପରେ ସୁଜନପରି ଏକ ରେଙ୍ଗୁନ ଯାତ୍ରୀର ଦୁଃଖ ବର୍ଣ୍ଣିତ ହୋଇଛି । ମହାଜନର ଋଣ ପରିଶୋଧ କରିବା ପାଇଁ ନିଜର ତରୁଣୀ ଭାର୍ଯ୍ୟା ଗୁଞ୍ଜର ଓ ବୃଦ୍ଧା ମାଆକୁ ଗାଁରେ ଛାଡ଼ି ସୁଜନ ରେଙ୍ଗୁନ ଯାଇଛି । ସେଠାରେ ମୋଟିଆ କାମ କରିଛି ଓ ରୂପଜୀବୀମାନଙ୍କ ମାୟାରେ ମୋହାଚ୍ଛନ୍ନ ହୋଇ ଦୀର୍ଘ କାଳ ଧରି ଆଉ ତା'ର ପ୍ରିୟ ଗାଁ ମାଟିକୁ ଫେରି ଆସି ପାରିନାହିଁ । ନିଜର ପ୍ରିୟତମା ପତ୍ନୀ ଗୁଞ୍ଜର ଦୀର୍ଘ ଦଶବର୍ଷ ଅପେକ୍ଷା କରି ଶେଷରେ ଦ୍ୱିତୀୟ ବିବାହ କରି ଅନ୍ୟତ୍ର ଚାଲି ଯାଇଛି ଏବଂ ବୁଢ଼ୀ ମାଆଟି ମଧ୍ୟ ପୁଅକୁ ଚାହିଁ ଚାହିଁ ମରିଯାଇଛି । ସୁଜନର କଷ୍ଟ-ଉପାର୍ଜିତ ସବୁ ଅର୍ଥ ରୂପଜୀବୀମାନେ ଆତ୍ମସାତ୍ କରି ନେଇଛନ୍ତି । ନିଃସ୍ୱ ସୁଜନ ଶେଷରେ ଗାଁଆକୁ ଆସି ତା'ର ମାଆକୁ ଆଉ ପାଇନି ଓ ଭାର୍ଯ୍ୟା ଗୁଞ୍ଜର ବି ଅନ୍ୟତ୍ର ଚାଲିଯାଇଛି । କେବଳ ତା'ର ପିତୃପୁରୁଷର ଭିଟାମାଟିରେ ବାଇଗଣ ଗଛ ଦେଖିଛି । ସେ ଦୁଃଖରେ ତା'ର ବିଡ଼ମ୍ବିତ ଜୀବନକୁ ଆହୁରି ଦୁଃସହ ମନେ କରିଛି । 'ବିଟଘର ରେଳଗାଡ଼ି' ଗଳ୍ପଟି ପରି ଏହି

'ରେଙ୍ଗୁନ୍‌ଯାତ୍ରୀ' ଗଳ୍ପଟିରେ ଏକ ବିପର୍ଯ୍ୟସ୍ତ ବିଡ଼ମ୍ବିତ ଜୀବନର ଚିତ୍ର ଆଙ୍କିବା ସଙ୍ଗେ ସଙ୍ଗେ ଲେଖକ ସାମାଜିକ ସମସ୍ୟାର ଚିତ୍ର ପ୍ରଦାନ କରିଛନ୍ତି । କାଳିନ୍ଦୀଚରଣଙ୍କ ଅଧିକାଂଶ ଗଳ୍ପରେ ଏହି ସାମାଜିକ ସମସ୍ୟା ଓ ବିପର୍ଯ୍ୟୟର ଛବି ଦେଖିବାକୁ ମିଳେ । ସାମାଜିକ ସଚେତନତା ଓ ମାନବିକ ମୂଲ୍ୟବୋଧ ତାଙ୍କ ଗଳ୍ପଗୁଡ଼ିକୁ ତେଣୁ ଅଧିକ ସଂବେଦନଶୀଳ କରିଛି ।

୧୯୩୨ ରେ ରଚିତ କାଳିନ୍ଦୀଚରଣଙ୍କ ଅନ୍ୟ ଏକ ଗଳ୍ପ ହେଉଛି 'ନିଶିଥିନୀ' ଯାହାକୁ ହୁଏତ ଗୋଟିଏ ଆତ୍ମଭାବସର୍ବସ୍ୱ ଗଳ୍ପ କୁହାଯାଇପାରେ । ଯେଉଁଥିରେ ସେ ଗୋଟିଏ ସୁନ୍ଦରୀ ନାୟିକାର କଳ୍ପନା କରିଛନ୍ତି । ନାୟିକାଟି ସୁନ୍ଦରୀ ହେଲେହେଁ ଗାଳ୍ପିକ ତା' ନିକଟରେ ଗୋଟିଏ କଳା ଦାଗକୁ ଦେଖାଇଛନ୍ତି । ହୁଏତ ଏହାକୁ ଏକ ସଂକେତ ଭାବରେ ଗ୍ରହଣ କରାଯାଇପାରେ । 'ଡାଆଣୀ ବୁଢ଼ୀ' 'ସାଗରିକା' ଓ 'ପ୍ରେମିକ' ଆଦି ଗଳ୍ପ ଉଲ୍ଲିଖିତ 'ନିଶିଥିନୀ' ଗଳ୍ପ ପରି ଅଧିକ କଳ୍ପନାଧର୍ମୀ । ଜଣେ ବୃଦ୍ଧଶିଳ୍ପୀର ନିଃସଙ୍ଗ ଜୀବନ ଉକ୍ତ 'ପ୍ରେମିକ' ଗଳ୍ପରେ ଅତି ହୃଦୟସ୍ପର୍ଶୀ ଭାଷାରେ ଚିତ୍ରଣ କରାଯାଇଛି । ପ୍ରେମିକ ଗଳ୍ପଟିର ନାମକରଣ ଯଥାର୍ଥ ହୋଇଛି । ବୃଦ୍ଧ ଶିଳ୍ପୀଟି ଯୌବନରେ ସୌନ୍ଦର୍ଯ୍ୟର ଉପାସନା କରିଛି । ସୌନ୍ଦର୍ଯ୍ୟର ଅନ୍ୱେଷଣ କରିଛି । ଅଥଚ ପୁଷ୍ପକୋମଳ ସୌନ୍ଦର୍ଯ୍ୟ ସେ କାହାଠାରେ କେଉଁଠି ପାଇନାହିଁ । ଶେଷରେ ନିରାଶ ହୋଇ ଯୁବକ ଶିଳ୍ପୀ ଯୌବନରେ ବିବାହ କରିନାହିଁ । ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ସେ ଏକାନ୍ତ ନିଃସଙ୍ଗ ଜୀବନ କଟାଇଛି । ଶିଳ୍ପୀଟିର ବୃତ୍ତି ହେଉଛି, କେବଳ ପ୍ରତିମା ଗଢ଼ିବା । ଶିଳ୍ପୀ ଜଣକ ତାଙ୍କ ହାତ ଗଢ଼ା ପ୍ରତିମାମାନଙ୍କ ସହିତ କେମିତି ଆତ୍ମୀୟତା ସ୍ଥାପନ କରିଥିଲେ ତା'ର ବର୍ଣ୍ଣନା ଦେଇ ପ୍ରେମିକ ଗଳ୍ପରେ କାଳିନ୍ଦୀଚରଣ ଲେଖିଛନ୍ତି - 'ଏହି ଜଡ଼ ମୂର୍ତ୍ତିଗୁଡ଼ା ତା' ଜୀବନରେ ବଡ଼ ସମ୍ବଳ, ତା ଦୁଃଖ ଚିନ୍ତା ଦୈନ୍ୟର କ୍ରୀଡ଼ା ସାଥୀ । ଏଗୁଡ଼ିକୁ ନେଇ ସେ ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ପାର ହୋଇଯାଏ । ସୁଦୀର୍ଘ ରାତି ପୁହାଇ ଦିଏ । ଏହି ମୂକ ଅଚଳ ବସ୍ତୁଗୁଡ଼ାକୁ ନାମ ଦେଇ କିଏ ତା'ର ପୁତ୍ର, କନ୍ୟା, କିଏ ନାତି, ନାତୁଣୀ ଇତ୍ୟାଦି ରୂପେ ସେ ଘରକରଣାରେ ଚଳେ । କାହା ଉପରେ କେତେବେଳେ ବିରକ୍ତ ହୋଇ ଶାସନ କରେ । କାହାକୁ କେବେ ସ୍ନେହ ଆଦର କରେ ; କଠିନ ମୂର୍ତ୍ତିଗୁଡ଼ାକ ନିହାତି ଭଲ ମଣିଷ ପରି ସବୁ ଶୁଣି ତୁନି ରହନ୍ତି । ଶିଳ୍ପୀର ଜୀବନରେ ଆସିଛି ପଡ଼ୋଶୀ ଆଚାର୍ଯ୍ୟଙ୍କ କନ୍ୟା 'କଳିକା' । ଏହି ଶିଶୁକନ୍ୟାଟି ପ୍ରତି ନିଃସଙ୍ଗ ଶିଳ୍ପୀଟି ଆକୃଷ୍ଟ ହୋଇଛି । କଳିକା ନିକଟରେ ସେ ତା'ର ପ୍ରତିମା ଗଢ଼ିବାର କାହାଣୀ କହିଛି ଏବଂ ଶିଶୁ କଳିକାଟିର ଛବିକୁ ଶିଳ୍ପୀ ଆଙ୍କିଛି ।

ବୟସ୍କା କଳିକାକୁ ଶିଳ୍ପୀମନ ସତେ ଯେପରି ଗ୍ରହଣ କରିପାରିନି ଓ ଶିଳ୍ପୀର ଏକ ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା ଏହି ପ୍ରେମିକ ଗଳ୍ପର ଅନ୍ୟ ଏକ ବିଶିଷ୍ଟ ଦିଗ । ତାଙ୍କର ସେହିପରି ଆଉ ଗୋଟିଏ ଗଳ୍ପ ହେଉଛି 'ସାଗରିକା' । ଗାଳ୍ପିକଙ୍କ ସାଗରିକା ଗଳ୍ପରେ ପୁଣି ସେହି ରୋମାଣ୍ଟିକ ଭାବାବେଗ ଦେଖିବାକୁ ମିଳେ । ସାଗରିକା ଗଳ୍ପରେ ଲେଖକ ସାଗରିକା ଚରିତ୍ରଟିକୁ ସାଗର କନ୍ୟା ରୂପେ ତର୍କଣା କରିଛନ୍ତି । ସେ ସାଗର କନ୍ୟା କୌଣସି ସାଧବ ସୌଦାଗରର ଅବରୁଦ୍ଧ ଗୃହସ୍ଥ ଜୀବନକୁ ଯେପରି ସ୍ୱୀକାର କରିପାରି ନାହିଁ । ସେମାନଙ୍କ ମଧ୍ୟରୁ କେହି କେହି କହନ୍ତି

ଜ୍ୟୋତ୍ସ୍ନା ନିଶିରେ ଆଲୁଳାୟିତ କେଶା, ନଗ୍ନମୂର୍ତ୍ତି ଜଣେ ଯୁବତୀ ଶୁଭ୍ର ସିକତା ଉପରେ ତୀର ବେଗରେ ଇତସ୍ତତଃ ଧାବମାନ ହୁଏ । କେହି କେହି କହନ୍ତି ଅମାବାସ୍ୟାର ଅନ୍ଧକାର ରାତ୍ରିରେ ସାଗରବେଳାରେ ତରୁଣୀ କଣ୍ଠର ଗୋଟାଏ ଟହ ଟହ ହାସ୍ୟ ଶୁଣାଯାଏ । ଆଉ ବସନ୍ତ ସନ୍ଧ୍ୟାରେ ଦିଗ୍‌ବଳୟ ରେଖା ଉପରେ ପବନ ସଙ୍ଗରେ କେଶରାଶି ଉଡ଼ାଇ ବିଜୁଳିପରି ଭୁବନର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ କିଏ ଜଣେ ଚମକି ଆସେ ।'

କାଳିନ୍ଦୀଚରଣଙ୍କ ଗଳ୍ପଗୁଡ଼ିକରେ ସାମାଜିକ ଅଙ୍ଗୀକାରବଦ୍ଧତା ହିଁ ମୁଖ୍ୟ ବିଭାବ । ତାଙ୍କର ଦାମ୍ପତ୍ୟ ଚିତ୍ର, ୧୯୩୭ ଅପରାଧିନୀ, ରୁଦ୍ରାକ୍ଷ, ନିୟତିର କ୍ରୀଡ଼ା, ଛିନ୍ନପୃଷ୍ଠା, ଜୟହିନ୍ଦ, ମାଂସର ବିଳାପ, ପଙ୍ଗୁ, ଓଡ଼ିଶାରେ ମହାଯୁଦ୍ଧ, ରେଙ୍ଗୁନଯାତ୍ରୀ ପୁନଶ୍ଚ, ପ୍ରେମିକ, ନିଶୀଥିନୀ, ଚକ ବୁଲୁଥାଏ, ଆରମ୍ଭ ଓ ଶେଷ, ସାଗରିକା, ଶେଷରଶ୍ମି, ଧୂଳି ଆଦି କାଳିନ୍ଦୀଚରଣଙ୍କ କେତେକ ସଫଳ ଗଳ୍ପ । ତାଙ୍କ ଗଳ୍ପଗୁଡ଼ିକ ଯେପରି ଆଙ୍ଗିକରେ ଗଳ୍ପପ୍ରଧାନ - ମଣିଷ ଜୀବନର କୋମଳ ପ୍ରବୃତ୍ତି ଓ ପ୍ରବଣତା ପ୍ରଦର୍ଶନ କରିବାରେ ସେପରି ଭାବପ୍ରଧାନ । କାଳିନ୍ଦୀଚରଣ ତାଙ୍କ ଗଳ୍ପ ଜରିଆରେ ମୁଖ୍ୟତଃ ଓଡ଼ିଶାର ସାମାଜିକ ଜୀବନକୁ ହିଁ ଚିତ୍ରଣ କରିଛନ୍ତି । ତାଙ୍କ ଗଳ୍ପର ଚରିତ୍ରସବୁ ସେ ଆମ ଓଡ଼ିଆ ସମାଜରୁ ହିଁ ବସ୍ତୁତଃ ଆହରଣ କରିଛନ୍ତି । ତାଙ୍କ ଗଳ୍ପଗୁଡ଼ିକର ଭାଷା ସୃଜନଶୀଳ ଓ କେତେକାଂଶରେ ନାଟକୀୟ ଓ କଥ୍ୟରୀତିର ।

କାଳିନ୍ଦୀଚରଣଙ୍କ ଅଧିକାଂଶ ଗଳ୍ପ କିନ୍ତୁ ବର୍ଣ୍ଣନାପ୍ରଧାନ । ବର୍ଣ୍ଣନା- ବାହୁଲ୍ୟ ତାଙ୍କ ଗଳ୍ପାଦର୍ଶର ଏକ ବିଶିଷ୍ଟ ବିଷୟ । ତାଙ୍କ ଗଳ୍ପରେ କିନ୍ତୁ ଏକ ଜୀବନବାଦୀ ସ୍ୱର ସବୁଠି ରହିଛି । ସେ ଅତି ନିଷ୍ଠାର ସହିତ ମଣିଷର ଜୀବନକୁ ଲକ୍ଷ୍ୟ କରିଛନ୍ତି । ସେ ତାଙ୍କ ଛିନ୍ନ ପୃଷ୍ଠା ଗଳ୍ପରେ ମଣିଷର ଜୀବନ ସମ୍ପର୍କରେ ଲେଖିଛନ୍ତି - 'ମନୁଷ୍ୟ ଜୀବନ ଗୋଟିଏ ଛବି ପରି ଅସଂଖ୍ୟ ପତ୍ରରେ ଏହା ମୁଦ୍ରିତ । ପ୍ରତ୍ୟେକ ପତ୍ର ଖୋଲିବା- ଗୋଟିଏ ଗୂଢ଼ ରହସ୍ୟର ଉଦ୍‌ଘାଟନ । ପ୍ରତି ପତ୍ରରେ ଜୀବନର ଶତ ଶତ ନୂତନର ପ୍ରତିକୃତି । କାହିଁରେ ସପ୍ତରଙ୍ଗରଞ୍ଜିତ ଛବି ମଧୁର ସୁନ୍ଦର ହୋଇ ଫୁଟି ଉଠିଅଛି । କେଉଁଠି ପୁଣି ଲୋତକଧାରାରେ ଆର୍ଦ୍ର । ନାନା ସ୍ଥାନରେ ଛିନ୍ନ ବିକଳ । ନିଜ ଜୀବନ ଉପରେ ଦୃଷ୍ଟି ପକାଇଲେ ମନୁଷ୍ୟ ଏହା ବେଶ୍ ବୁଝିପାରିବ ।'

ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତର ସ୍ୱାଧୀନତା ଆନ୍ଦୋଳନ, ଭାରତର ତଦାନୀନ୍ତନ ସାମାଜିକ ଓ ରାଜନୈତିକ ପୃଷ୍ଠଭୂମି ଓ ଅର୍ଥନୈତିକ ଅବସ୍ଥା ସବୁ କାଳିନ୍ଦୀଚରଣଙ୍କ ଗଳ୍ପରେ ନାନା ଭାବରେ ଚିତ୍ରିତ ହୋଇଛି । ତାଙ୍କର 'ଚକ ବୁଲୁଥାଏ' ଗଳ୍ପ ସାମାଜିକ ତଥା ରାଜନୈତିକ ଛବି ଥିବା ଏକ ଗଳ୍ପ । କବି ବ୍ୟକ୍ତିତ୍ୱର ପ୍ରତିଫଳନ ଅବଶ୍ୟ ତାଙ୍କ ଗଳ୍ପରେ କମ୍‌ବେଶୀରେ ପରିଦୃଷ୍ଟ ହୋଇଛି । 'ମାଂସର ବିଳାପ', 'ସାଗରିକା' ଆଦି ଗଳ୍ପ ତା'ର ଦୃଷ୍ଟାନ୍ତ । ପୁଣି ଭାରତର ସମ୍ପ୍ରଦାୟଭିତ୍ତିକ ବିଭାଜନ, ସାମ୍ପ୍ରଦାୟିକ ଦଙ୍ଗା, ଶରଣାର୍ଥୀ ସମସ୍ୟା ଆଦି ବହୁ ବୃହତ୍ତର ଜାତୀୟ ଜୀବନର ଛବି ତାଙ୍କ ଗଳ୍ପର ବିଷୟ-ପରିସରଭୁକ୍ତ ହୋଇଛି ।

କାଳିନ୍ଦୀଚରଣଙ୍କ ମୋଟ ଅଣଚାଳିଶଟି ଗଳ୍ପ ରହିଛି ଓ ତନ୍ମଧ୍ୟରୁ ତାଙ୍କର ପନ୍ଦରଟି ଗଳ୍ପ ପ୍ରାୟ ସଂସ୍କାରଧର୍ମୀ । ଗଳ୍ପଗୁଡ଼ିକ ତେଣୁ ଅଧିକ ଜୀବନନିଷ୍ଠ ଓ ସମାଜସଂଲଗ୍ନ ।

'ଧୂଳି' ଗଳ୍ପରେ ଦରିଦ୍ର ଓ ନିପୀଡ଼ିତ ବର୍ଗର ମଣିଷଙ୍କ ଛବି ଅଙ୍କିତ ହୋଇଛି । ସେମାନଙ୍କ ଜୀବିକା ନିର୍ବାହର ଦୈନନ୍ଦିନତା ରୂପାୟିତ ହୋଇଛି । 'ଡାଆଣୀ ବୁଢ଼ୀ' ଗଳ୍ପ ଗୋଟିଏ ହତଭାଗିନୀ ବୁଢ଼ୀ ଜୀବନର କ୍ଷତବିକ୍ଷତ ଛବି । ଏଥିରେ ଗୋଟିଏ ବୁଢ଼ୀର ନିଃସଙ୍ଗ ଜୀବନ ହିଁ ବର୍ଣ୍ଣିତ । ୧୯୨୫ ମସିହାରେ ଉତ୍କଳ ସାହିତ୍ୟ ପୃଷ୍ଠାରେ ପ୍ରକାଶିତ କାଳିନ୍ଦୀଚରଣଙ୍କ ଏହି 'ଡାଆଣୀ ବୁଢ଼ୀ' ଗଳ୍ପ ସହିତ ଜର୍ଜ ଇଲିୟଟ୍‌ଙ୍କ 'ସାଇଲାସ୍ ମାନନ୍'ର ସାଦୃଶ୍ୟ ରହିଛି । ବୁଢ଼ୀ ସନ୍ତାନହୀନା ଓ ବନ୍ଧୁକୁଟୁମ୍ବବିବର୍ଜିତା ଏକ ନିଃସଙ୍ଗ ମଣିଷ; ଯିଏ ତା ଯୌବନକୁ ବିଜନିତ ରାତିରେ ନିତି ନିତି ସ୍ମରଣ କରେ । ମାଟି ତଳେ ପୋତିଥିବା ତା'ର ଗହଣାଗୁଡ଼ିକୁ କାଢ଼େ । ତାକୁ ବିହ୍ୱଳ ଚିତ୍ତରେ ଦେଖେ ଓ ପୁଣି ମାଟି ଭିତରେ ପୋତି ପକାଏ । ବୁଢ଼ୀ ଜୀବନର କାରୁଣ୍ୟ ହିଁ ଏ ଗଳ୍ପର ମୁଖ୍ୟ କଥାବସ୍ତୁ । ବୁଢ଼ୀକୁ ସମସ୍ତେ ଥଟ୍ଟା ପରିହାସ କରନ୍ତି । ଗାଁର ଦୁଷ୍ଟ ବାଳକମାନେ ତାକୁ ଟେକାପଥର ଫିଙ୍ଗନ୍ତି । ବୁଢ଼ୀ ଜୀବନର ଭିତର କ୍ଷତକୁ ସେ ଗାଁର କେହି ଯେମିତି ବୁଝିପାରନ୍ତି ନାହିଁ ।

ବୁଢ଼ୀର ଗହଣା ଅପହୃତ ହୋଇଯାଇଛି । ସେ ମିନି ନାମକ ଏକ କନ୍ୟା ସନ୍ତାନକୁ ପାଳନ କରିଛି । ସେ ଗାଁର ଜମିଦାର ନିଃସନ୍ତାନ ଥିବାରୁ ସେ ଜୋର୍ କରି ମିନିକୁ ନେଇଯାଇଛନ୍ତି । ବୁଢ଼ୀର ନିଃସଙ୍ଗତାଜନିତ ମାନସିକ ଯନ୍ତ୍ରଣା ଏହା ଦ୍ୱାରା ଆହୁରି ବଢ଼ି ଯାଇଛି । ବୁଢ଼ୀ ପ୍ରତିଦିନ ରାତିରେ ଆଲୁଅ ଜାଳି ଭାନୁ ମଲ୍ଲିକ ପୁଣି ବୁଢ଼ୀକୁ ଫେରାଇ ଦେଇ ଯାଇଥିବା ଗହଣା ସବୁକୁ ଦେଖେ । କାଳିନ୍ଦୀଚରଣ ଏହି ଡାଆଣୀ ବୁଢ଼ୀ ଗଳ୍ପରେ ଏକ ବ୍ୟଥାତୁର ନାରୀ ଜୀବନର ବିଡ଼ମ୍ବନାର ଚିତ୍ର ହିଁ ଦେଇଛନ୍ତି ।

କାଳିନ୍ଦୀଚରଣଙ୍କ ଗଳ୍ପର ବିଷୟବସ୍ତୁ ବ୍ୟାପକ । ସେ ଆମ ସମାଜ ପରିବାର ଓ ଅନ୍ୟ ଅନେକ କଥାକୁ ଲେଖିବା ସହିତ ଯୁଦ୍ଧ ଦୁର୍ଭିକ୍ଷ ତଥା ସାମ୍ପ୍ରଦାୟିକ ଦଙ୍ଗାର ଚିତ୍ର ମଧ୍ୟ ଆଙ୍କିଛନ୍ତି ।

ଗାଳ୍ପିକଙ୍କର 'ବିଜୟ ଉତ୍ସବ', 'ଓଡ଼ିଶାରେ ମହାଯୁଦ୍ଧ', 'ଜୟହିନ୍ଦ', 'ପୁନଶ୍ଚ', 'ବାଦୀପାଲା', 'ରେଙ୍ଗୁନଯାତ୍ରୀ', 'ସାପୁଆ' ଆଦି ଗଳ୍ପ ଗୁଡ଼ିକରେ ମୁଖ୍ୟତଃ ଯୁଦ୍ଧ ଓ ଦଙ୍ଗାର ଚିତ୍ର ଅଙ୍କିତ ହୋଇଛି ।

କାଳିନ୍ଦୀଚରଣଙ୍କ 'ବାଦୀପାଲା' ଗଳ୍ପଟି ସାମ୍ପ୍ରତିକ ଦଙ୍ଗା ଉପରେ ଆଧାରିତ । ସାମ୍ପ୍ରଦାୟିକ ଦଙ୍ଗା ଦ୍ୱାରା ଗାଁ କିପରି ଉଚ୍ଛନ୍ନ ହୋଇଯାଇଛି, ତା'ର ଦାରୁଣ ଚିତ୍ର ଲେଖକ ଏହି ବାଦୀପାଲା ଗଳ୍ପରେ ଦେଇଛନ୍ତି ।

ସେହିପରି 'ପୁନଶ୍ଚ' ଗଳ୍ପ ମଧ୍ୟ ଦଙ୍ଗା ଚିତ୍ର ସମ୍ବଳିତ ଏକ ଗଳ୍ପ । ହିନ୍ଦୁ, ମୁସଲମାନଙ୍କ ମଧ୍ୟରେ ଭୟଙ୍କର ସାମ୍ପ୍ରଦାୟିକ ଦଙ୍ଗା ଏହି ଗଳ୍ପରେ ବର୍ଣ୍ଣିତ । କରିମ୍ ଓ ସିନ୍ଧୁଆର ନିବିଡ଼ ବନ୍ଧୁତା ତଥା ନିଷ୍କପଟ ଜୀବନର କିପରି ଅବସାନ ଘଟିଛି ତା'ର ଦୁଃଖଦ ଚିତ୍ର ହେଉଛି କାଳିନ୍ଦୀ ଚରଣଙ୍କ 'ପୁନଶ୍ଚ' ଗଳ୍ପଟି ।

କାଳିନ୍ଦୀଚରଣଙ୍କ 'ଦ୍ୱିତୀୟା ଚାନ୍ଦ', 'ରାଜେଶ୍ୱର ବନ୍ଧୁ', 'ଚକ ବୁଲୁଥାଏ', 'ଉପହାର', 'ଜୟହିନ୍ଦ', 'ରୁଦ୍ରାକ୍ଷ', 'ନିୟତିର କ୍ରୀଡ଼ା' ଏକ ଏକ ସାମାଜିକ ବାସ୍ତବତାଭିତ୍ତିକ ଗଳ୍ପ । ସେ

ଦିନର କୃଷିଭିତ୍ତିକ ଓଡ଼ିଶାର ସାମାଜିକ ଜୀବନର ଧର୍ମ, ଅର୍ଥନୀତି, ନାନା ରାଜନୈତିକ ସମସ୍ୟା, ଶ୍ରେଣୀ ସଂଘର୍ଷ ଓ ଶୋଷଣର ଚିତ୍ର ତାଙ୍କ ଗଳ୍ପରେ ପ୍ରଦାନ କରିଛନ୍ତି ।

'ବିଟଘର ଓ ରେଳଗାଡ଼ି' ଅନ୍ୟତମ ସଫଳ ଗଳ୍ପ । ଗଳ୍ପଟି ୧୯୩୩ ମସିହାରେ ଯୁଗବୀଣା ପତ୍ରିକାରେ ପ୍ରକାଶିତ ହୋଇଥିଲା । ତାଙ୍କର 'ପାଷାଣର ପ୍ରତୀକ୍ଷା' ଗଳ୍ପ ନାରୀ ମନସ୍ତତ୍ତ୍ୱକୁ ଚିତ୍ରଣ କରିଛି । ପିତୃମାତୃହୀନ ନିରୂପମର ହରିଚନ୍ଦନଙ୍କ କନ୍ୟା ହେମମାଳୀ ପ୍ରତି ଶ୍ରଦ୍ଧା, ଆନ୍ତରିକତା ଏହି ଗଳ୍ପରେ ବର୍ଣ୍ଣିତ ହୋଇଛି । ଏଠାରେ ନାରୀ ଜୀବନର ତ୍ୟାଗ ଓ ମହନୀୟତା, ମଧ୍ୟ ବର୍ଣ୍ଣିତ ।

କାଳିନ୍ଦୀଚରଣ ଜଣେ କବି ଥିବାରୁ କିଛି କାବ୍ୟାତ୍ମକତାର ପ୍ରଭାବ ତାଙ୍କ ଗଳ୍ପରେ ପରିଲକ୍ଷିତ ହୋଇଛି । କିଛି ଅଧିକ ଭାବପ୍ରବଣତା, ଅତିକଳ୍ପନା ତଥା କାବ୍ୟିକ ତନ୍ମୟତା ତାଙ୍କ ଗଳ୍ପ ଶୈଳୀରେ ପରିଲକ୍ଷିତ ହୋଇଛି । ତେବେ ଏଥିପାଇଁ ତାଙ୍କ ଗଳ୍ପଗୁଡ଼ିକର ତତ୍କାଳୀନ ସମାଜର ବାସ୍ତବ ଚିତ୍ର ଓ ଓଡ଼ିଶାର ଗ୍ରାମ୍ୟ ଜୀବନର ଆଲେଖ୍ୟ ଅଙ୍କନ ପଥରେ ଏହା କୁତ୍ରାପି ବାଧକ ହୋଇନାହିଁ । ବରଂ ଗାଳ୍ପିକଙ୍କର ଏହି କାବ୍ୟିକ ଭାଷା ଶୈଳୀ ଯୋଗୁଁ ସାମାଜିକ ସମସ୍ୟାକୁ ନେଇ ଲିଖିତ ଗଳ୍ପଗୁଡ଼ିକ ପ୍ରଚାରଧର୍ମୀ ହୋଇଯିବାର ଦୋଷରୁ ମୁକ୍ତ ।

କାଳିନ୍ଦୀଚରଣ ସର୍ବମୋଟ ୩୯ଟି ଗଳ୍ପ ରଚନା କରିଛନ୍ତି । ତାଙ୍କ ଗଳ୍ପଗୁଡ଼ିକରେ ଉଲ୍ଲେଖଯୋଗ୍ୟ ବିଷୟ-ବୈଚିତ୍ର୍ୟ ରହିଛି । ମାତ୍ର ସେ ଅଧିକ ସଂସ୍କାରପ୍ରୟାସୀ ଥିବାରୁ ତାଙ୍କ ଅଧିକାଂଶ ଗଳ୍ପରେ ସେହି ଭାବଚେତନା ପ୍ରତିବଦ୍ଧ ଅଭିବ୍ୟକ୍ତି ଲାଭ କରିଛି । କୁସଂସ୍କାର ଓ ଅନ୍ଧବିଶ୍ୱାସ ସାମାଜିକ ଅନଗ୍ରସରତାର କାରଣ ବୋଲି କାଳିନ୍ଦୀଚରଣ ସ୍ପଷ୍ଟ ଉପଲବ୍ଧି କରିଛନ୍ତି । ତାଙ୍କର ଏହି ସଂସ୍କାରପ୍ରୟାସ ତାଙ୍କ କବିତାରେ ଆହୁରି ତୀବ୍ର ଓ ମାର୍ମିକ ଅଭିବ୍ୟକ୍ତି ଲାଭ କରିଛି । କିନ୍ତୁ ମାନବୀୟ ପ୍ରେମ ପ୍ରତି ତାଙ୍କର ପ୍ରତିବଦ୍ଧତା ତାଙ୍କ ଗଳ୍ପଗୁଡ଼ିକର ସର୍ବୋତ୍ତମ ଆଦର୍ଶ ହୋଇଛି ।

ମଣିଷର ଶ୍ରଦ୍ଧା ଆତ୍ମୀୟତାକୁ, ମଣିଷର ମନ, କଳ୍ପନା ଓ ପ୍ରେମକୁ ଅନୁଭବ କରିବା ହେଉଛି ମନୁଷ୍ୟ ଆତ୍ମାର ସର୍ବୋତ୍ତମ ସଂସ୍କାର ବୋଲି ଗାଳ୍ପିକ କାଳିନ୍ଦୀଚରଣ ତାଙ୍କ ଶିଳ୍ପୀଜୀବନରେ ଯେପରି ହୃଦୟଙ୍ଗମ କରିଛନ୍ତି ।

କାଳିନ୍ଦୀଚରଣଙ୍କ ଗଳ୍ପ ସବୁ ମଣିଷର ସାଧାରଣ ଭାବାବେଗକୁ ଆହୁରି ସୁନ୍ଦର ଓ ସ୍ୱର୍ଗୀୟ କରି ପ୍ରକଟନ କରିଛି । କାରଣ ଜନସାଧାରଣଙ୍କ ଜୀବନ ସହିତ କଳାର ସର୍ବବିଧ ସଂଯୋଗ ରହିଛି ।

କାଳିନ୍ଦୀଚରଣଙ୍କ ଗଳ୍ପର ବିଶେଷତ୍ୱ ହେଲା ତା'ର ଏକାନ୍ତ ମାନବଧର୍ମତା । ମାର୍କସଙ୍କ ପରି କାଳିନ୍ଦୀଚରଣ ଯେପରି ଅନୁଭବ କରିଛନ୍ତି ଯେ, ଯେଉଁ କଳା ମନୁଷ୍ୟର ଆତ୍ମାକୁ ପ୍ରଭାବିତ କରେ ନାହିଁ ଓ ମନୁଷ୍ୟକୁ ବାଦ ଦେଇ ଯେଉଁ କଳା ସୃଷ୍ଟି ତାହା ହେଉଛି ଅଧଃପତିତ କଳା ।

# ପ୍ରାବନ୍ଧିକ କାଳିନ୍ଦୀଚରଣ

କବି, ଗାଳ୍ପିକ ତଥା ଔପନ୍ୟାସିକ କାଳିନ୍ଦୀଚରଣ ମଧ୍ୟ ଜଣେ ବିଶିଷ୍ଟ ପ୍ରାବନ୍ଧିକ । ସମଗ୍ର ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଉତ୍ତରଣ ଇତିହାସରେ ଅନନ୍ତ ପ୍ରେମ, ମହାସ୍ରୋତ, ଯୌବନର ପ୍ରଭାବ ପ୍ରତିଷ୍ଠା ଆଦି ଉନ୍ନତମାନର ପ୍ରବନ୍ଧ ପରି କାଳିନ୍ଦୀଚରଣଙ୍କ 'ତ୍ୟାଗ ଓ ପ୍ରେମ' 'ସତ୍ୟ ଶିବ ସୁନ୍ଦର' 'ବେଗ ହିଁ ଉନ୍ନତିର ଲକ୍ଷଣ' 'ବିଶ୍ୱରୂପ ଦର୍ଶନ' ଆଦି ପ୍ରବନ୍ଧ ଯଥେଷ୍ଟ ଲୋକପ୍ରିୟ । କାଳିନ୍ଦୀ କେବଳ ନିଜ ହୃଦୟ-ସଂପ୍ରେରିତ ଆବେଗକୁ ତାଙ୍କ ଗଳ୍ପ କବିତାରେ ପ୍ରକାଶ କରି ନାହାନ୍ତି ; ବରଂ ନିଜ ବୁଦ୍ଧି ଓ ବିଚାରକୁ ନାନା ଭାବରେ ନିଜ ପ୍ରବନ୍ଧାବଳୀ ଜରିଆରେ ପ୍ରକଟନ କରିଛନ୍ତି । ବିଚାର ପ୍ରତି ପ୍ରଣୋଦିତ ହେବା ଯେକୌଣସି ସ୍ୱାଧୀନଚେତା ଶିଳ୍ପୀର ଏକ ବୈଶିଷ୍ଟ୍ୟ ନିଶ୍ଚୟ ।

ଜଣେ ଶିଳ୍ପୀ ନିଜର ବିଚାର, ମୂଲ୍ୟବୋଧ ତଥା ଆଦର୍ଶର ବିଷୟକୁ ନିଜସ୍ୱ ଯୁକ୍ତିର ଭିତ୍ତିରେ ଉପସ୍ଥାପନ କରିଥାଏ ।

କାଳିନ୍ଦୀ ଜଣେ ସାରସ୍ୱତ ଜଗତର ବାସିନ୍ଦା ଭାବେ ନିଜ ଶିଳ୍ପୀ ଜୀବନର ଅଭିଜ୍ଞତା, ନିଜର ଶାସ୍ତ୍ରଦର୍ଶିତା ଓ ନିଜର ସୂକ୍ଷ୍ମ ପର୍ଯ୍ୟବେକ୍ଷଣକୁ ତାଙ୍କ ପ୍ରବନ୍ଧମାନଙ୍କରେ ପ୍ରକାଶ କରିଛନ୍ତି । ତାଙ୍କ ପ୍ରବନ୍ଧଗୁଡ଼ିକର ଶୈଳୀ ଯେପରି ପରିଚ୍ଛନ୍ନ, ସେହିପରି ଯୁକ୍ତିନିଷ୍ଠ । ତାଙ୍କ ପ୍ରବନ୍ଧଗୁଡ଼ିକ ପାଠକଙ୍କ ଆଗରେ କେବଳ ବିବରଣୀର ଏକ ବସ୍ତୁନିଷ୍ଠ ରଚନା ନୁହେଁ, ଏହା ତାଙ୍କ ଗଳ୍ପ ଉପନ୍ୟାସ ପରି ମଧ୍ୟ ଉପଭୋଗ୍ୟ । ପାଠକର ବୁଦ୍ଧି ଓ ଚେତନାବୃତ୍ତିକୁ ପରିପୁଷ୍ଟ କରିବାରେ ଏହି ପ୍ରବନ୍ଧଗୁଡ଼ିକ ଅତୁଳନୀୟ ।

ସେ ଯେଉଁସବୁ ପ୍ରବନ୍ଧ ଲେଖିଛନ୍ତି ସେ ସବୁ ସେ ମୁଖ୍ୟତଃ ଜଣେ ସାହିତ୍ୟିକ ଭାବେ ଲେଖିଛନ୍ତି । ସମାଜବିଜ୍ଞାନୀ ଭାବେ ନୁହେଁ । ସେଥିପାଇଁ ତାଙ୍କ ପ୍ରବନ୍ଧଗୁଡ଼ିକ ଅଧିକାଂଶରେ ସାହିତ୍ୟିକ ତଥା କେତେକାଂଶରେ ସାହିତ୍ୟିକମାନଙ୍କ ଜୀବନୀ ।

ତାଙ୍କର 'ହିନ୍ଦୀ ସାହିତ୍ୟର କଥା-ସମ୍ରାଟ ପ୍ରେମଚନ୍ଦ', 'ବୋରିସ୍ ପାଷ୍ଟରନାକ୍', 'ଲାବଣ୍ୟବତୀରେ ଉପେନ୍ଦ୍ରଭଞ୍ଜ', 'ରବୀନ୍ଦ୍ର ସାହିତ୍ୟରେ ବିଶ୍ୱପ୍ରେମ', 'ଫକିରମୋହନଙ୍କ ଚରିତ୍ର ଚିତ୍ରଣ', 'ମାର୍କଟ୍ୱେନ', 'ଗୋପବନ୍ଧୁ ସ୍ମୃତି', 'କବି ଗଙ୍ଗାଧର', 'ରବୀନ୍ଦ୍ର ଗଳ୍ପର ବିଶେଷତ୍ୱ' ଆଦି ପ୍ରବନ୍ଧଗୁଡ଼ିକ ଯେପରି ବିଶିଷ୍ଟ ସାହିତ୍ୟିକଙ୍କ ସାହିତ୍ୟକୃତି ଓ ଜୀବନ ଉପରେ ଆଲୋକପାତ କରିଛି ସେହିପରି ସେ କେତେକ ସାହିତ୍ୟିକ ସମସ୍ୟା ମଧ୍ୟ ତାଙ୍କ ପ୍ରବନ୍ଧମାନଙ୍କରେ ଉତ୍ଥାପନ କରିଛନ୍ତି । ସେ ଲେଖିଛନ୍ତି 'ସାହିତ୍ୟର ବ୍ୟବସାୟ', 'ନବଯୁଗ ସାହିତ୍ୟ ସଂସଦ', 'ଉଦ୍‌ବୋଧନ', 'ସାହିତ୍ୟର ଜ୍ୱାଉଁରି କାଠି', 'ବ୍ୟଙ୍ଗ ବିଚାର' ଆଦି ପ୍ରବନ୍ଧ ଯେଉଁଥିରେ ସେ ସାହିତ୍ୟର କେତେକ ତାତ୍ତ୍ୱିକ ସମସ୍ୟା ବିଷୟରେ ନିଜର ଯୁକ୍ତି ଉପସ୍ଥାପନ କରିଛନ୍ତି ।

ଏକଥା ସତ ଯେ,ପୃଥିବୀର ବହୁ ବିଶିଷ୍ଟ କବି ଓ ସୃଜନଶୀଳ ଲେଖକ ନିଜ ଅଭିଜ୍ଞତାକୁ ଓ ଚିନ୍ତନ ମନନକୁ ପ୍ରବନ୍ଧରେ ଲେଖିବା ପାଇଁ ବହୁଭାବରେ ଉନ୍ମୁଖ ହୋଇଉଠିଛନ୍ତି । ୟୁରୋପୀୟ

ତଥା ଭାରତୀୟ ସାହିତ୍ୟ କ୍ଷେତ୍ରରେ ଜଣେ ଜଣେ ଭଲ କବି ବା ଗାଳ୍ପିକ ଭଲ ପ୍ରାବନ୍ଧିକ ହେବାର ନଜିର ରହିଛି । ଓଡ଼ିଆ ସାହିତ୍ୟରେ ମଧ୍ୟ ରାଧାନାଥ, ମଧୁସୂଦନ, ନୀଳକଣ୍ଠ, ମାୟାଧର ମାନସିଂ ପ୍ରମୁଖ ସାରସ୍ୱତ ପୁରୁଷମାନେ କାବ୍ୟକବିତା ତଥା ଗଳ୍ପ ଉପନ୍ୟାସ ରଚନା କ୍ଷେତ୍ରରେ ଯେପରି ପ୍ରତିଷ୍ଠିତ ହୋଇଛନ୍ତି, ସେହିପରି ପ୍ରବନ୍ଧ ରଚନା କ୍ଷେତ୍ରରେ ମଧ୍ୟ ପାରଦର୍ଶିତାର ପରିଚୟ ଦେଇଛନ୍ତି । କାଳିନ୍ଦୀଚରଣଙ୍କ ପ୍ରବନ୍ଧସବୁ ତାଙ୍କ ନିଜ ସାହିତ୍ୟିକ ଜୀବନର ଏକ ଏକ ବୌଦ୍ଧିକ ପ୍ରତିକ୍ରିୟା ବା ସ୍ପନ୍ଦନ । ତାଙ୍କର ଏହି ବୌଦ୍ଧିକ ସ୍ପନ୍ଦନରେ ଆମେ ଆବେଗିକ ଉଚ୍ଛ୍ୱାସର ପାରସ୍ପର୍ଯ୍ୟାତ୍ମକତାକୁ ଅସ୍ୱୀକାର କରିପାରିବା ନାହିଁ ।

କାଳିନ୍ଦୀଚରଣ ନିଜର ମୂଳ ଚେତନା ଓ ଉପଲବ୍ଧିଠାରୁ ନିଜକୁ ଖୁବ୍ ଦୂରକୁ ଘୁଞ୍ଚାଇ ଦେଇ ଅର୍ଥନୈତିକ ସମସ୍ୟା, ଭାଷା, ସମାଜ ସଂସ୍କାର କିମ୍ବା ସେହିପରି ଅନ୍ୟ କୌଣସି ସମସ୍ୟା ଉପରେ ପ୍ରବନ୍ଧ ରଚନା କରିନାହାନ୍ତି । କବି ଓ କଥାଶିଳ୍ପୀ ଭାବେ କାଳିନ୍ଦୀଚରଣ ଯେଉଁ ଚେତନା ଓ ମୂଲ୍ୟବୋଧର ପରିଚୟ ଦେଇଛନ୍ତି, ତାହା ତାଙ୍କର କେତେକ ପ୍ରବନ୍ଧରେ କେତେକ ମନନଶୀଳ ଯୁକ୍ତି ଭିତ୍ତିରେ ଉପସ୍ଥାପିତ ହୋଇଛି ।

ସେ ପୁଣି ଏପରି ଜଣେ ପ୍ରାବନ୍ଧିକ ଥିଲେ ଯେ ନିର୍ଦ୍ଦିଷ୍ଟ କୌଣସି ଧର୍ମ, ଜାତି ବା ସାହିତ୍ୟ ତାଙ୍କ କଳ୍ପନା-ପରିସରକୁ ଆଦୌ ସୀମିତ କରିପାରିନାହିଁ । ସେ ଉପେନ୍ଦ୍ର ଭଞ୍ଜ, ଗଙ୍ଗାଧର ଓ ଫକିରମୋହନଙ୍କ ବିଷୟରେ ଯେପରି ଲେଖିଛନ୍ତି, ସେହିପରି ମାର୍କଟ୍ୱେନ ଓ ବରିସ୍ ପାସ୍ତରନାକଙ୍କ ବିଷୟରେ ଲେଖିଛନ୍ତି । ପ୍ରାଦେଶିକତାରୁ ଜାତୀୟ ଓ ଆନ୍ତର୍ଜାତୀୟ ସାହିତ୍ୟ ବିଷୟରେ ନିଜର ସାହିତ୍ୟିକ ଅଭିରୁଚିବଶତଃ ଚିନ୍ତା ଓ ଯୁକ୍ତି ଉପସ୍ଥାପନ କରିବାକୁ ସେ ଅଧିକ ସମୀଚୀନ ମନେ କରିଛନ୍ତି । ତେଣୁ ତାଙ୍କର ଅଧିକାଂଶ ପ୍ରବନ୍ଧ ସାହିତ୍ୟ ଆଲୋଚନା-ମୂଳକ ଓ କ୍ୱଚିତ୍ ପ୍ରବନ୍ଧ ଅନ୍ୟ ବିଷୟକ ।

କାଳିନ୍ଦୀଚରଣଙ୍କ ପ୍ରବନ୍ଧଗୁଡ଼ିକ ତାଙ୍କ ବିଶ୍ୱଦୃଷ୍ଟିର ପରିଚୟ ଦିଏ ଓ ସେ ମହାକାଳର ମହାଜୀବନକୁ ଦେଖିବା ପାଇଁ ମଧ୍ୟ ପ୍ରୋତ୍ସାହିତ ହୋଇଛନ୍ତି । ଜଣେ ଉତ୍ତମ ଶିଳ୍ପୀ ଯେ ସବୁ ଦୃଷ୍ଟିରୁ ଜଗତ ଓ ଜୀବନର ବିଷୟକୁ ଦେଖିବାକୁ ପ୍ରଣୋଦିତ ହୁଏ ସେ କେବେ ଆଳଙ୍କାରିକ କବିଟିଏ ନୁହେଁ କି ସମାଲୋଚକଟିଏ ନୁହେଁ ମଧ୍ୟ । ବୁଦ୍ଧି ଓ ହୃଦୟନିଷ୍ଠ ସାହିତ୍ୟସ୍ରଷ୍ଟା କାଳିନ୍ଦୀଚରଣଙ୍କ ଭାବଧାରା ବହୁଦେଶୀୟ (Cosmopolitant attitude) ଉପରେ ଆଧାରିତ ।

'ସତ୍ୟ ଶିବ ସୁନ୍ଦର' ବା 'ବେଗ ହିଁ ଉନ୍ନତିର ଲକ୍ଷଣ' ଆଦି ଯେଉଁ କେତୋଟି ଚିନ୍ତାମୂଳକ ପ୍ରବନ୍ଧ ତାଙ୍କର ରହିଛି, ସେଥିରେ ସେ ଆନ୍ତର୍ଜାତିକ ଚେତନାର ପରିଚୟ ଦେଇଛନ୍ତି ଓ ତାଙ୍କର ଯୁକ୍ତିର ଉତ୍ସ କେବଳ ଓଡ଼ିଆ ସାହିତ୍ୟ କିମ୍ବା ଭାରତୀୟ ଧର୍ମ ଦର୍ଶନ ଆଲୋଚନାରେ ସୀମିତ ନୁହେଁ । ସେ ବିଶ୍ୱ ସାହିତ୍ୟରୁ ନାନା ନଜିର ଦେଇଛନ୍ତି ଓ ଶୁଦ୍ଧ ତୁଳନାତ୍ମକ ଭାବେ ଆଲୋଚନା କରିଛନ୍ତି । ତାଙ୍କ ପ୍ରବନ୍ଧରେ ତେଣୁ ଏହି ତୁଳନାତ୍ମକ ଦିଗ (comparative perspective) ଅଧିକ ପ୍ରତ୍ୟକ୍ଷ ।

କାଳିନ୍ଦୀଚରଣ ତାଙ୍କ ସାହିତ୍ୟ ଆଲୋଚନାମୂଳକ ପ୍ରବନ୍ଧଗୁଡ଼ିକରେ ନିଜର ସାରସ୍ୱତ ଅଭୀପ୍ସା ଓ ବିଶ୍ୱାସ ସବୁକୁ ରୂପାୟିତ କରିଛନ୍ତି । 'ସତ୍ୟ ଶିବ ସୁନ୍ଦର' ପ୍ରବନ୍ଧଟି ତାଙ୍କ ଶାସ୍ତ୍ରୀୟ ଚେତନାର ନିଦର୍ଶନ । ମହାଭାରତ ଯୁଦ୍ଧର ପୃଷ୍ଠଭୂମିରେ ଭଗବାନ କୃଷ୍ଣ ଅର୍ଜ୍ଜୁନଙ୍କୁ କୁରୁକ୍ଷେତ୍ର ଯୁଦ୍ଧରେ ଅବତୀର୍ଣ୍ଣ ହେବା ପାଇଁ ଯେଉଁ ପ୍ରୋତ୍ସାହନ ଦେଉଛନ୍ତି, ତାହା ଉଲ୍ଲେଖ କରି କାଳିନ୍ଦୀଚରଣ ଅର୍ଜ୍ଜୁନ କିପରି 'ସତ୍ୟ ଶିବ ସୁନ୍ଦର'ର ପ୍ରତିଷ୍ଠା ପାଇଁ ଅସ୍ତ୍ର ଉତ୍ତୋଳନ କରିଛନ୍ତି ଓ ଅବସାଦ ଭୁଲି ବୀରବିକ୍ରମରେ ସମର ପ୍ରାଙ୍ଗଣରେ ଅବତୀର୍ଣ୍ଣ ହୋଇଛନ୍ତି ତାହା ବର୍ଣ୍ଣନା କରିଛନ୍ତି । ସତ୍ୟ ଓ ନ୍ୟାୟ ପ୍ରତିଷ୍ଠିତ ନ ହେଲେ ସୁନ୍ଦରର ଉପଲବ୍ଧି ନାହିଁ । ବୀରତ୍ୱ ହେଉଛି ସତ୍ୟ ଶିବ ସୁନ୍ଦର ଉପଲବ୍ଧିର ଏକ ମାଧ୍ୟମ । ଆସକ୍ତ ପୁରୁଷ ସତ୍ୟ ଉପଲବ୍ଧି କରିପାରେ ନାହିଁ କି ସୁନ୍ଦରକୁ ଅବଲୋକନ କରିପାରେ ନାହିଁ । ଯୁଦ୍ଧ ହେଉଛି ସତ୍ୟର ପ୍ରତିଷ୍ଠାପାଇଁ, ବିଶ୍ୱର ସ୍ୱାର୍ଥ ପାଇଁ, ଅନେକଙ୍କ କଲ୍ୟାଣ ପାଇଁ ଏକ ପ୍ରୟୋଜନୀୟ ବିଷୟ ; ଯୁଦ୍ଧରେ ଅର୍ଜ୍ଜୁନ ଅବତୀର୍ଣ୍ଣ ହୋଇଛନ୍ତି ଆପଣା ପ୍ରାଣରେ ସତ୍ୟ ଶିବ ସୁନ୍ଦରକୁ ଉପଲବ୍ଧି କରିବା ପାଇଁ ।

ସେହିପରି କାଳିନ୍ଦୀଚରଣ ତାଙ୍କ ତ୍ୟାଗ ଓ ପ୍ରେମ ପ୍ରବନ୍ଧରେ ତ୍ୟାଗପୂତ ପ୍ରେମର ସ୍ୱରୂପ ବିଷୟରେ ଆଲୋଚନା କରିଛନ୍ତି । ପ୍ରତିଟି ମଣିଷର ପ୍ରେମ ପଶ୍ଚାତରେ ତ୍ୟାଗର ପ୍ରବଣତା ବିଦ୍ୟମାନ । ତ୍ୟାଗ ନାହିଁ ତ ପ୍ରେମ ନାହିଁ । ଆପଣାକୁ ଭଲପାଇ କେହି ଅନ୍ୟକୁ ପ୍ରେମ କରିପାରେ ନାହିଁ । ଏହି ତ୍ୟାଗପୂତ ପ୍ରେମର ବହୁଚିତ୍ର ପ୍ରାବନ୍ଧିକ କାଳିନ୍ଦୀଚରଣ ତାଙ୍କ 'ତ୍ୟାଗ ଓ ପ୍ରେମ' ପ୍ରବନ୍ଧରେ ପ୍ରଦାନ କରିଛନ୍ତି । ପିଆର (Peer)ର ଜୀବନ କଥା ଭିତରେ ପ୍ରାବନ୍ଧିକ ତ୍ୟାଗ ଓ ପ୍ରେମର ଆପେକ୍ଷିକ ସଂପର୍କକୁ ଆଲୋଚନା କରିଛନ୍ତି । ନାରୀ ପୁରୁଷକୁ କିପରି ଅସୀମକରି ଦେଖିଛି ଓ ବିଶ୍ୱମୟ କରିପାରିଛି ଓ ନାରୀର ଅର୍ଘ୍ୟ ଏହି ତ୍ୟାଗ ଓ ପ୍ରେମ ରୂପରେ କିପରି ସୁବାସିତ ହୋଇପାରିଛି, ତା'ର ମନୋଜ୍ଞ ବ୍ୟାଖ୍ୟା ଲେଖକ ଉକ୍ତ ପ୍ରବନ୍ଧରେ କରିଛନ୍ତି ।

କାଳିନ୍ଦୀଚରଣ ତାଙ୍କର ପ୍ରବନ୍ଧମାନଙ୍କରେ ଆଦର୍ଶ ମୂଲ୍ୟବୋଧ ତଥା ନୈତିକତା ପାଇଁ ଯୁକ୍ତି ବାଢ଼ିଛନ୍ତି । ନିଜର ଯେଉଁ ବିଶ୍ୱାସ ରହିଛି ତାକୁ ନାନାମତେ ନାନା ଯୁକ୍ତି ଦେଇ ଉପସ୍ଥାପନ କରିଛନ୍ତି । ତାଙ୍କର 'ବେଗ ହିଁ ଉନ୍ନତିର ଲକ୍ଷଣ' ପ୍ରବନ୍ଧଟି ଏକ ଚିନ୍ତାମୂଳକ ଉଚ୍ଚକୋଟୀର ପ୍ରବନ୍ଧ । ସେ ପ୍ରତିଟି ବିଷୟ ଗତିବେଗକୁ ହିଁ ଉନ୍ନତିର ଲକ୍ଷଣ ବୋଲି ଯୁକ୍ତି କରି ପ୍ରତିପାଦନ କରିଛନ୍ତି । ଏହି ବେଗ ହିଁ ଆଧୁନିକ ସଭ୍ୟତାକୁ ଜନ୍ମ ଦେଇଛି । ବେଗ ସଭ୍ୟତାର ନିଦର୍ଶନ । ପ୍ରାଚୀନ କାଳର ସମାଜରେ ଏହି ରକେଟୀୟ ଗତିର ଅବର୍ତ୍ତମାନରେ ମଣିଷ ଅନଗ୍ରସର ଜୀବନ ଯାପନ କରୁଥିଲା । ମଣିଷର ପ୍ରତିଯୋଗିତା-ପ୍ରବଣତା ତାକୁ ଆଜି ଅଧିକ ସଭ୍ୟ ଓ ଉନ୍ନତ କରିଛି । ପ୍ରାବନ୍ଧିକ ଯୁକ୍ତିକରି କହିଛନ୍ତି ବେଗ ମନୁଷ୍ୟର ପ୍ରକୃତିଗତ । ଏହା ତାହାର ଦେହର ଧର୍ମ । ମନୁଷ୍ୟ ଶରୀରର ପ୍ରତି ଧମନୀରେ ହିଁ ରକ୍ତ ପ୍ରବାହ ମହାବେଗରେ ଧାବିତ । ପୃଥିବୀର ବହୁ ବସ୍ତୁ ଏହି ବେଗର ଅଧୀନ । ଗତି ମଣିଷକୁ ଆଗକୁ ନେଇଛି । ଆମର ଗତି ଆମ ପ୍ରଗତିର ମାପକାଠି । ଯେଉଁ ସମାଜରେ ମଣିଷର ଅଦ୍ଭୁତ ଉଦ୍ଭାବନ ଓ ଆବିଷ୍କାର ତା'ର ଚିନ୍ତା ଓ ଚେତନାକୁ ଦ୍ରୁତ କରିଛି ସେଠି ସଭ୍ୟତାର ବିକାଶ ସେତିକି ଦ୍ରୁତତର ହୋଇଛି ।

ଏତଦ୍‌ଭିନ୍ନ କାଳିନ୍ଦୀଚରଣଙ୍କ ବହୁ ସାହିତ୍ୟ ଆଲୋଚନାତ୍ମକ ପ୍ରବନ୍ଧ ରହିଛି ତଥା ଯୁଗ ପ୍ରବର୍ତ୍ତକ ଓ ଭାରତୀୟ ତଥା ୟୁରୋପୀୟ କବି ଲେଖକଙ୍କ ଜୀବନୀ ମଧ୍ୟ ସେ ଆଲୋଚନା କରିଛନ୍ତି । ବୋରିସ୍ ପାଷ୍ଟରନାକ, ମାର୍କଟ୍ୱାନ୍, ରବୀନ୍ଦ୍ରନାଥ, ଟଲଷ୍ଟୟ ପ୍ରମୁଖ କବି ଓ ଲେଖକଙ୍କ ସାରସ୍ୱତ ଜୀବନ କାଳିନ୍ଦୀଚରଣଙ୍କୁ ଆକୃଷ୍ଟ କରିଛି ।

ତାଙ୍କର ପ୍ରବନ୍ଧଗୁଡ଼ିକର କଳେବର ଉଲ୍ଲେଖଯୋଗ୍ୟ ଭାବେ କ୍ଷୁଦ୍ର ହେଲେ ହେଁ ତାଙ୍କ ଯୁକ୍ତିଗୁଡ଼ିକ ଅଧିକ ମୌଳିକ ହୋଇଛି ଓ ପ୍ରବନ୍ଧଗୁଡ଼ିକର ଶୈଳୀ ବେଶ୍ ପ୍ରଭାବଧର୍ମୀ ହୋଇପାରିଛି । ଜଣେ କବି ବା ସୃଜନଶୀଳ ଲେଖକର ଆଲୋଚନାମୂଳକ ଗଦ୍ୟ ରଚନା ସେହି ଭାବରେ ସୃଜନଶୀଳ ଓ ଶୈଳୀପୂର୍ଣ୍ଣ ହୋଇଥାଏ, ଯାହା ଆମେ କାଳିନ୍ଦୀଚରଣଙ୍କ ପ୍ରବନ୍ଧମାନଙ୍କରେ ହିଁ ଦେଖୁଁ ।

କବି ଓ କଥାଶିଳ୍ପୀ କାଳିନ୍ଦୀଚରଣ ନିଜର ପ୍ରବନ୍ଧ ରଚନାକୁ କେବଳ ସାହିତ୍ୟ ସମସ୍ୟା ଭିତରେ ସୀମିତ କରି ରଖିନାହାନ୍ତି । ସେ ପ୍ରକୃତରେ ବହୁ ଦୃଷ୍ଟିରୁ ସାହିତ୍ୟିକ ସମସ୍ୟାଗୁଡ଼ିକୁ ବିଚାର କରିଛନ୍ତି । ପ୍ରାବନ୍ଧିକ ଭାବରେ ତାଙ୍କର ଦୃଷ୍ଟିଭଙ୍ଗୀ ଯେତିକି ସମାଜ-ନିର୍ଭରଶୀଳ ଓ ବାସ୍ତବବାଦୀ ତାହା ସେତିକି ମଧ୍ୟ ଅନ୍ତର୍ଦୃଷ୍ଟିର ତୀକ୍ଷ୍ଣତାରେ ଗଭୀର ଓ ଗମ୍ଭୀର ।

'ପ୍ରାଚୀନ ଭାରତର ବିଦୁଷୀ', 'ଆଧୁନିକା ନାରୀ' ଏବଂ 'ସୃଷ୍ଟି ସ୍ଥିତି ପ୍ରଳୟ' ଆଦି ପ୍ରବନ୍ଧଗୁଡ଼ିକ ତାଙ୍କର ନାରୀ ସମସ୍ୟା ସଚେତନତାକୁ ପ୍ରକଟନ କରେ । ତାଙ୍କ ପ୍ରବନ୍ଧର ଭାବଧାରା ଯେତେ ଆବେଗିକ ହେଲେ ମଧ୍ୟ ତା'ର ଉପସ୍ଥାପନା କିନ୍ତୁ ଅଧିକ ବିଶ୍ଳେଷଣାତ୍ମକ ଗବେଷଣାତ୍ମକ ନୁହେଁ । ତାଙ୍କ ପ୍ରବନ୍ଧଗୁଡ଼ିକ ପୁଣି ଅଧିକ ଭାବରେ ଧାରଣାଧର୍ମୀ (Conceptual) । ପ୍ରେମଚନ୍ଦ ଆଦି କବି ଓ ଲେଖକଙ୍କ ଉପରେ ସେ ଯେଉଁ ଅଭିମତ ଦେଇଛନ୍ତି ତାହା କାଳିନ୍ଦୀଚରଣଙ୍କ ଚେତନା ଓ ସାହିତ୍ୟାଦର୍ଶକୁହିଁ ପ୍ରକଟିତ କରେ ।

'ଲାବଣ୍ୟବତୀରେ ଉପେନ୍ଦ୍ର ଭଞ୍ଜ', ଶୀର୍ଷକ ପ୍ରବନ୍ଧରେ ପ୍ରାବନ୍ଧିକ କାଳିନ୍ଦୀଚରଣ ଉପେନ୍ଦ୍ର ଭଞ୍ଜଙ୍କୁ ଜଣେ ଯାଦୁକର ବୋଲି ଅଭିହିତ କରିଛନ୍ତି, ଯେ କୁତ୍ସିତକୁ ସୁନ୍ଦର କରିଦିଏ ।' ଲାବଣ୍ୟବତୀରେ କବି ଉପେନ୍ଦ୍ର ଭଞ୍ଜଙ୍କ ସୂକ୍ଷ୍ମତମ କଳ୍ପନା ପ୍ରକଟିତ ହୋଇଛି । ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' ଏକ ଶୀର୍ଷସ୍ଥାନୀୟ ସୌକୁମାର୍ଯ୍ୟ ସୃଷ୍ଟିର ନିଦର୍ଶନ ବୋଲି ପ୍ରାବନ୍ଧିକ ଅଭିମତ ଦେଇଛନ୍ତି । ଅନ୍ୟମାନେ ଯେପରି ଉପେନ୍ଦ୍ର ଭଞ୍ଜଙ୍କ ଆଳଙ୍କାରିକତାକୁ ନିନ୍ଦା କରିଛନ୍ତି ଓ ସେହି ସଂପର୍କିତ ଉପେନ୍ଦ୍ରଙ୍କ ପାରଦର୍ଶିତାକୁ ହେୟ ମନେ କରିଛନ୍ତି । ପ୍ରାବନ୍ଧିକ କାଳିନ୍ଦୀଚରଣ କିନ୍ତୁ ସେପରି କରିନାହାନ୍ତି । ଲାବଣ୍ୟବତୀକୁ ସୂକ୍ଷ୍ମତମ ଅନୁଭବ ତଥା ସମ୍ବେଦନଶୀଳ ସୌନ୍ଦର୍ଯ୍ୟ ଦୃଷ୍ଟିର ଚାରୁ ଆଲେଖ୍ୟ ବୋଲି ଅଭିହିତ କରିଛନ୍ତି ।

ସେହିପରି ରବୀନ୍ଦ୍ରନାଥଙ୍କୁ ରସ ସୃଷ୍ଟି ମଧ୍ୟରେ ଅନନ୍ୟ 'ସତ୍ୟ ସନ୍ଧାନୀ' ବୋଲି ଅଭିହିତ କରିଛନ୍ତି । ରବୀନ୍ଦ୍ରଙ୍କ କବିପ୍ରାଣ କେତେ ଭାବରେ ମହାଦିଗନ୍ତ ପ୍ରତି ଉନ୍ମୁଖ ଥିଲା ସେ ବିଷୟ ବର୍ଣ୍ଣନା କରି ପ୍ରାବନ୍ଧିକ ରବୀନ୍ଦ୍ରନାଥଙ୍କୁ ଅନନ୍ୟ ପ୍ରତିଭାର କବି ବୋଲି ବର୍ଣ୍ଣନା କରିଛନ୍ତି । ରବୀନ୍ଦ୍ରନାଥଙ୍କ ସୋନାର ତରୀ, ମାନସୀ, ଚିତ୍ରା ଓ ବଳାକା ଏବଂ ଶତସହସ୍ର କବିତା ଓ

ସଙ୍ଗୀତ ମାଧ୍ୟମରେ ଯେଉଁ ଗଭୀର ହୃଦୟାବେଗ ଓ ଭାବୋଚ୍ଛ୍ୱାସ ପ୍ରକାଶ ପାଇଛି ତାହାର ଚରମ ନିବେଦନ ପ୍ରସାରିତ ହୋଇଛି ବିଶ୍ୱପ୍ରେମରେ । ଅସଂଖ୍ୟ ବନ୍ଧନ ମଧ୍ୟରେ ମୁକ୍ତିର ସ୍ୱାଦ ଲାଭ କରିବା ହିଁ କବିଙ୍କର ଏକାନ୍ତ ଅକାଂକ୍ଷା ।

କାଳିନ୍ଦୀଚରଣଙ୍କ 'ମଥୁରାମଙ୍ଗଳ ସମାଲୋଚନା' ଏକ ଚମତ୍କାର ସାହିତ୍ୟ-ଆଲୋଚନାମୂଳକ ପ୍ରବନ୍ଧ । ଏହାକୁ ସାହିତ୍ୟ ସମାଲୋଚନା ବୋଲି ନିର୍ଦ୍ଦିଷ୍ଟ ଭାବରେ କୁହାଯାଇପାରେ । ଉକ୍ତ ପ୍ରବନ୍ଧରେ ସେ ଓଡ଼ିଆ କାବ୍ୟ ପରମ୍ପରା ଓ ସେଥିରେ 'ମଥୁରାମଙ୍ଗଳ'ପରି କାବ୍ୟର ବିଶେଷତ୍ୱ କଥା ଉଲ୍ଲେଖ କରିଛନ୍ତି । 'ମଥୁରାମଙ୍ଗଳ' କାବ୍ୟର ଭାବଦର୍ଶନ, କବିତ୍ୱ, ଭାଷା, ଅଳଙ୍କାର ପ୍ରତିଟି ବିଷୟ ଉପରେ ସେ ଆଲୋକପାତ କରିଛନ୍ତି । 'ମଥୁରାମଙ୍ଗଳ' ସହିତ ଅନ୍ୟାନ୍ୟ ପ୍ରମୁଖ ବୈଷ୍ଣବ କାବ୍ୟର ତୁଳନା କରି ସମାଲୋଚକ କାଳିନ୍ଦୀଚରଣ ତାଙ୍କ ତୁଳନାତ୍ମକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । ଏହି ପ୍ରବନ୍ଧଟିକୁ ସେ ନିଷ୍ଠାର ସହିତ ରଚନା କରିଛନ୍ତି, ଯେଉଁଥିରେ ପ୍ରତ୍ୟେକ ଦିଗ ଆଲୋଚିତ ହୋଇଛି । ବୈଷ୍ଣବ ସାହିତ୍ୟର ରାଧାକୃଷ୍ଣତତ୍ତ୍ୱ ବିଷୟଟିର ମୂଳକଥା ସଂପର୍କରେ କାଳିନ୍ଦୀଚରଣ ସବିଶେଷ ଆଲୋଚନା କରିଛନ୍ତି । ଓଡ଼ିଆ ସମାଲୋଚନା ଧାରାରେ ତେଣୁ କାଳିନ୍ଦୀଚରଣଙ୍କ ଏହି 'ମଥୁରାମଙ୍ଗଳ ସମାଲୋଚନା' ଏକ ଉଲ୍ଲେଖଯୋଗ୍ୟ କୃତି ହୋଇରହିବ ।

ଭକ୍ତଚରଣ ଦାସଙ୍କ 'ମଥୁରାମଙ୍ଗଳ' କାବ୍ୟ ସମ୍ପର୍କରେ କାଳିନ୍ଦୀଚରଣ ଯଥାର୍ଥରେ କହିଛନ୍ତି - 'ମଥୁରାମଙ୍ଗଳ'ରେ ଏହି ପୂର୍ଣ୍ଣତାର ମାଧୁରୀ ଆମ୍ଭେମାନେ ଲାଭକରୁ । ଭାଷା ଭାବ, ବର୍ଣ୍ଣନା, ଛନ୍ଦ, ଶବ୍ଦଯୋଜନା, ଚରିତ୍ର ଚିତ୍ରଣ, ବୀର, କରୁଣ, ବାତ୍ସଲ୍ୟାଦି ରସ, ନୀତି, ଧର୍ମ ପ୍ରଭୃତି ଯାହା କିଛି ଆଦର୍ଶ କାବ୍ୟର ଲକ୍ଷଣ ସେ ସମସ୍ତ ମଥୁରାମଙ୍ଗଳରେ ଏକାଧାରରେ ବିଦ୍ୟମାନ । ଏହାର ଯାହା ଅବା ତ୍ରୁଟି ସେ କେବଳ ଏହି ପୂର୍ଣ୍ଣତା ବିଧାନରେ ହିଁ ସହାୟତା କରିଅଛି । ମଥୁରାମଙ୍ଗଳକୁ ପୂର୍ଣ୍ଣରୂପେ ଅନୁଭବ କରିବା ସମୟରେ କବି ଭକ୍ତଚରଣଙ୍କ ସ୍ୱରୂପର ଆଭାସ ମଧ୍ୟ ଆମ୍ଭେମାନେ ପାଉଅଛୁଁ । ଭକ୍ତଚରଣଙ୍କ ସାହିତ୍ୟ ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ସାହିତ୍ୟ ଦୀପ୍ତିରେ ମଳିନ ନୁହେଁ, ତାହା ଚିରଉଜ୍ଜ୍ୱଳ୍ୟମାନ । ଉତ୍କଳ ସାହିତ୍ୟ ଭଣ୍ଡାରରେ ମୁକ୍ତା ସ୍ୱରୂପ । ଏତେ ସହଜ ସରଳ ଭାବରେ ଆଉ କେହି କବି ପ୍ରାଣର ଭାବକୁ ଅପୂର୍ବ ପୁଲକ ପ୍ରଦାନ କରି ଉତ୍କଳ ଭାଷାରେ ପ୍ରକାଶ କରିପାରି ନାହାନ୍ତି । ଅତୁଳନୀୟ ବିଭବରେ କବି ଚିରଦିନ ବିଭବଶାଳୀ ।

'ମଥୁରାମଙ୍ଗଳ' କାବ୍ୟର ସରଳ ଭାଷା ଓ କବିତ୍ୱକୁ କାଳିନ୍ଦୀଚରଣ ନିଷ୍କପଟ ଭାବରେ ସ୍ୱୀକାର କରିଛନ୍ତି । ସେ ଏହି ଆଲୋଚନାଟିକୁ ଏତେ ବିଭୋର ଚିତ୍ତରେ ଲେଖିଛନ୍ତି ଯେ ଏହାକୁ ବରଂ ଯଥାର୍ଥରେ ଏକ 'appreciation' ବୋଲି କୁହାଯିବ । ଜଣେ ସତ ସମାଲୋଚକ କବିର କବିତାରେ ପ୍ରତୀକିତ ଶକ୍ତି ଓ ସୌନ୍ଦର୍ଯ୍ୟକୁ ଯଥାଯଥ ଭାବେ ଚିହ୍ନଟ କରିବା ପାଇଁ ହିଁ ସମାଲୋଚନା ଲେଖିବାକୁ ପ୍ରଣୋଦିତ ହୋଇଥାଏ । ଦୋଷତ୍ରୁଟି ପ୍ରଦର୍ଶନ କରିବା ପାଇଁ ନୁହେଁ । ସଦ୍ ସମାଲୋଚନା କବିତା ପ୍ରଦର୍ଶନ କରିବା ପାଇଁ ନୁହେଁ । ସଦ୍ ସମାଲୋଚନା କବିତା

ଅଭ୍ୟନ୍ତରରେ ଥିବା କବିର ଅସାମାନ୍ୟ ସୌନ୍ଦର୍ଯ୍ୟ-ଦୃଷ୍ଟି ଓ ସୃଜନଶୀଳତାକୁ ଚିହ୍ନେଇ ଦେଇଥାଏ ।

ପୂର୍ବରୁ ସୂଚିତ ହୋଇଛି ଯେ ସାହିତ୍ୟ ଆଲୋଚନାମୂଳକ ପ୍ରବନ୍ଧରେ କାଳିନ୍ଦୀଚରଣ କେଉଁଠି ବିଶ୍ଳେଷଣ ନାମରେ ପାଣ୍ଡିତ୍ୟ ପ୍ରଦର୍ଶନ କିଂବା ଆଳଙ୍କାରିକ ଆଟୋପ ପ୍ରଦର୍ଶନ କରିନାହାନ୍ତି; ସେ ବିଭୋର ଚିତ୍ତରେ କେବଳ କବିତାର ସଫଳ ଦିଗସବୁକୁ ବିଶ୍ଳେଷଣ କରିଛନ୍ତି । କାଳିନ୍ଦୀଚରଣ ବିଶ୍ୱର ସବୁ ପ୍ରାନ୍ତରୁ ଭାବ ଆଣିଛନ୍ତି । ଚେତନା ଆଣିଛନ୍ତି । ସାହିତ୍ୟ ଆଲୋଚନାରେ ସେ ତାଙ୍କର ଦାର୍ଶନିକ ଦୃଷ୍ଟିଭଙ୍ଗୀଟିକୁ ଆଲୋଚନା ପରିସରଭୁକ୍ତ କରିଛନ୍ତି । ତାଙ୍କର 'ବିଶ୍ୱରୂପ ଦର୍ଶନ' କିଂବା 'ବେଗ ହିଁ ଉନ୍ନତିର ଲକ୍ଷଣ' ପ୍ରବନ୍ଧ ଦୁଇଟି ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଇତିହାସରେ ଦୁଇଟି ମୌଳିକ ପ୍ରବନ୍ଧ । ପ୍ରବନ୍ଧ ଦୁଇଟି ସମୁନ୍ନତ ଚିନ୍ତା ଓ ଚେତନାର ଅବତାରଣା କରିଛି, ମାତ୍ର ଉକ୍ତ ପ୍ରବନ୍ଧସବୁ ପାଠକକୁ ଭାବବିହ୍ୱଳ କରିଦିଏ ।

ତାଙ୍କ ପ୍ରବନ୍ଧର ଅନ୍ୟ ଏକ ବିଶେଷତ୍ୱ ହେଲା ତାଙ୍କର ସ୍ୱାଭାବିକ ଭାଷା ଶୈଳୀ । ଓଡ଼ିଆ ସାହିତ୍ୟରେ ମଧୁସୂଦନ ବା ବିଶ୍ୱନାଥ କର ପ୍ରମୁଖ ପ୍ରାବନ୍ଧିକମାନେ ଯେପରି କ୍ଲିଷ୍ଟ ସଂସ୍କୃତ ଭାଷା ବ୍ୟବହାର କରିଛନ୍ତି କାଳିନ୍ଦୀଚରଣ ଆଦୌ ତାହା କରି ନାହାନ୍ତି । ତାଙ୍କ ପ୍ରବନ୍ଧଗୁଡ଼ିକ ଖୁବ୍ ବେଶୀ ଗୂଢ଼ ଦାର୍ଶନିକତାରେ ଭାରାକ୍ରାନ୍ତ ନୁହେଁ କି ତାଙ୍କ ପ୍ରବନ୍ଧଗୁଡ଼ିକର ଭାଷା ସେମିତି ପାଣ୍ଡିତ୍ୟପୂର୍ଣ୍ଣ ନୁହେଁ । ସାଧାରଣ ଭାଷାରେ ଲେଖିବା ପାଇଁ ସଂକଳ୍ପକରିବା ହେଉଛି ଜଣେ ବଡ଼ ସାହିତ୍ୟିକଙ୍କର ଲକ୍ଷଣ । ଅବଶ୍ୟ ଓଡ଼ିଆ ସାହିତ୍ୟର ସବୁଜଯୁଗ ବେଳକୁ ଭାଷା ଅଧିକାଂଶରେ ବଦଳିଗଲାଣି । ଉଭୟ ଗଦ୍ୟ-ପଦ୍ୟରେ କୃତିତ୍ୱ ପ୍ରଦର୍ଶନ କରିଥିବା କାଳିନ୍ଦୀଚରଣ ମାଟିର ମଣିଷର ଭାଷାକୁଇ ବ୍ୟବହାର କରିଛନ୍ତି । ସେଥିପାଇଁ ତାହା ଜୀବନ୍ତ ହୋଇଛି । 'ସାହିତ୍ୟର କାଉଁରି କାଠି' କାଳିନ୍ଦୀଚରଣଙ୍କ ଆଉ ଏକ ଚମତ୍କାର ପ୍ରବନ୍ଧ । ସାହିତ୍ୟ ଅସତ୍ୟ, ଅଶିବ, ଅସୁନ୍ଦରକୁ ମଧ୍ୟ ସତ୍ୟ-ଶିବ-ସୁନ୍ଦର ରୂପଦିଏ । ବିଚାରର ନିକିତି ତାହାର ସେଥିପାଇଁ ଯେତିକି ବିଚିତ୍ର, ସେତିକି ଅସାଧାରଣ । ସାନକୁ ବଡ଼ ଉଚ୍ଚକୁ ନୀଚ ସୁନ୍ଦରକୁ କୁତ୍ସିତ ଧନୀକୁ ଦରିଦ୍ର ପଣ୍ଡିତକୁ ମୂର୍ଖ ପୁଣ୍ୟକୁ ପାପ ଦୁଃଖକୁ ସୁଖ ପୁଣି ଅନ୍ଧାରକୁ ଆଲୁଅକରି ଦେଖାଇ ଦେବାର ଯେଉଁ ସୃଜନଶୀଳ ପ୍ରଜ୍ଞା ଶକ୍ତି ଓ ସାହସ ତାହାର ଅଛି ତାହା କୌଣସି ତଥାକଥିତ ବିଚାରାଳୟ ବା ଶାସନ ଦରବାରର ନାହିଁ । ପରମ ମଙ୍ଗଳ ଓ ପରମ ସୌନ୍ଦର୍ଯ୍ୟର ଅନୁପ୍ରେରଣାରେ କବି ଚିର ପରମ ସତ୍ୟର ଅନୁସନ୍ଧାନ କରେ । ପ୍ରତିଷ୍ଠିତ କୌଣସି ସାମାଜିକ ନୀତି, ରୁଚି ଓ ଆଦର୍ଶ ଦ୍ୱାରା ତା'ର ଅନ୍ୱେଷୁ ମନ ବନ୍ଧାପଡ଼ିଯାଏ ନାହିଁ ।

କାଳିନ୍ଦୀଚରଣଙ୍କ ପ୍ରବନ୍ଧ ରଚନା ଯଥେଷ୍ଟ ନ ହେଲେ ହେଁ ତାଙ୍କ ପ୍ରବନ୍ଧଗୁଡ଼ିକର ନୂତନତ୍ୱକୁ ଆଦୌ ଅସ୍ୱୀକାର କରାଯାଇପାରିବ ନାହିଁ । ଜଣେ ଭଲ କବି ଭଲ ଗଦ୍ୟ ଲେଖକ ହେବାର ଯେଉଁ ନଜିର ସବୁ ଅଛି କାଳିନ୍ଦୀଚରଣ ହେଉଛନ୍ତି ଜଣେ ସେହି ପର୍ଯ୍ୟାୟର ସାରସ୍ୱତ ସାଧକ ।

କାଳିନ୍ଦୀଚରଣଙ୍କ ପ୍ରବନ୍ଧଗୁଡ଼ିକ ପଶ୍ଚାତରେ ତାଙ୍କର ବିଶ୍ୱାସ ଓ ଉପଲବ୍ଧିକୁ ଆମେ ଲକ୍ଷ୍ୟ କରିପାରୁ । 'ବୋରିସ ପାଷ୍ତରନାକ' ପ୍ରବନ୍ଧରେ କାଳିନ୍ଦୀଚରଣ ବିଶ୍ୱ ବିଖ୍ୟାତ କଥାଶିଳ୍ପୀ

ପାଷ୍ତରନାକଙ୍କ ସଂକ୍ଷିପ୍ତ ଜୀବନୀ ତଥା ସାହିତ୍ୟାଦର୍ଶ ବିଷୟ ଉଲ୍ଲେଖ କରିଛନ୍ତି । ଯୁଗେ ଯୁଗେ ନିର୍ଭୀକ କବି ଓ କଳାକାରମାନେ ଯେଉଁସବୁ ତାଡ଼ନାର ସମ୍ମୁଖୀନ ହୋଇଛନ୍ତି ତା'ର ସୂଚନା ଦେଇ ପାଷ୍ତରନାକଙ୍କ ବିଷୟରେ ପ୍ରାବନ୍ଧିକ କାଳିନ୍ଦୀଚରଣ ଲେଖିଛନ୍ତି - 'ଜନମତର ଅନ୍ଧତାକୁ ଉଜ୍ଜ୍ୱଳ କରି ଜଳିଉଠିଛି ସତୀ ସୀତାର ଅଗ୍ନି ପରୀକ୍ଷା । ଦେଶ, କାଳ, ରାଷ୍ଟ୍ର, ରାଜନୀତି ସବୁରି ଊର୍ଦ୍ଧ୍ୱରେ ଘୋଷିତ ହୋଇଛି ସତ୍ୟର ଆହ୍ୱାନ, ବାସ୍ତବତାର ଆହ୍ୱାନ । ତାହା ଭ୍ରୂକ୍ଷେପ କରେ ନାହିଁ ଦୁଃଖକୁ ପୁଣି ମୃତ୍ୟୁକୁ । ସେହି ଆହ୍ୱାନ ଦେଇ ଏକାଧିକ ନିର୍ଭୀକ କବି ଭାବୁକ ମତାନ୍ଧ ରାଷ୍ଟ୍ର ଓ ଜନତାର ଶିକାର ହୋଇପଡ଼ିଛନ୍ତି । ସେମାନଙ୍କ ରକ୍ତରେ ପୃଥିବୀର ଇତିହାସ ପୃଷ୍ଠା ରଞ୍ଜିତ । ସେ ଆହ୍ୱାନ ଦେଶ କାଳର ସୀମା ମଧ୍ୟରେ ଆବଦ୍ଧ ନୁହେଁ । ଏହା ରୁଷ କିଂବା ଆମେରିକାର ପ୍ରଭେଦ, ଅବା ସାମ୍ରାଜ୍ୟବାଦ, ସମାଜବାଦ ବା ସାମ୍ୟବାଦର ପାର୍ଥକ୍ୟ ସ୍ୱୀକାର କରେ ନାହିଁ । ସ୍ୱୀକାର କରେ ନାହିଁ କୌଣସି ଏକ ନିର୍ଦ୍ଦିଷ୍ଟ ରାଜ ଦରବାର, ରାଜନୀତିକ ସଂସ୍ଥା କିଂବା ବିଚାରାଳୟର କାନୁନ । ତାହା ଗଭୀର ଓ ଉଦାର ମାନବିକତାର ଆହ୍ୱାନ । ସେହି ଆହ୍ୱାନ ତୋଳି ପାଷ୍ତରନାକ୍ ବିଶ୍ୱ ସାହିତ୍ୟରେ ଶହୀଦ ହୋଇଛନ୍ତି ।

ସେହିପରି କାଳିନ୍ଦୀଚରଣଙ୍କ 'ମାର୍କଟ୍ୱେନ୍' ପ୍ରବନ୍ଧ ଯାହା ମୁଖ୍ୟତଃ ଆମେରିକାର ବିଶିଷ୍ଟ କଥାଶିଳ୍ପୀ 'ମାର୍କଟ୍ୱେନ'ଙ୍କ ଜୀବନୀ ସମ୍ପର୍କରେ ଏକ ଚରିତମୂଳକ (Biographical) ପ୍ରବନ୍ଧ । ଟ୍ୱେନ ବିଶେଷତଃ ଜଣେ ବିଶିଷ୍ଟ ଗଦ୍ୟ ଲେଖକ; ଯାହାଙ୍କ ରଚନାବଳୀ ମୁଖ୍ୟତଃ ବ୍ୟଙ୍ଗବିଦ୍ରୂପଭରା ହାସ୍ୟରସାତ୍ମକ । ଉକ୍ତ ପ୍ରବନ୍ଧରେ ଟ୍ୱେନଙ୍କ ଜୀବନୀ, କେତେକ ମୌଳିକ ରଚନାକୃତି 'The Innocents Abroad', 'Prince and the Pauper' ଆଦି ଭ୍ରମଣ କାହାଣୀ ତଥା ହାସ୍ୟରସାତ୍ମକ ଗ୍ରନ୍ଥ ସମ୍ପର୍କରେ ସୂଚନା ଏବଂ ଟ୍ୱେନଙ୍କ ବିଷୟରେ ଅଭିମତ ଦେଇ କହିଛନ୍ତି - 'ହାସ୍ୟରସର ପ୍ରାଚୁର୍ଯ୍ୟ ମଧ୍ୟରେ ସାମାଜିକ ନ୍ୟାୟ ପାଇଁ ତାଙ୍କର ଐକାନ୍ତିକ ଇଚ୍ଛା ନିହିତ ଥିଲା । ଇଂଲଣ୍ଡରେ ତାଙ୍କର ଖ୍ୟାତି ଏତେଦୂର ପ୍ରତିଷ୍ଠିତ ହୋଇଥିଲା ଯେ, ଅକସ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟ ତାହାଙ୍କୁ ସମ୍ମାନସୂଚକ ଡକ୍ଟରେଟ ଉପାଧିରେ ଭୂଷିତ କରିଥିଲା ।'

ପ୍ରାବନ୍ଧିକ କାଳିନ୍ଦୀଚରଣ ତାଙ୍କ ପ୍ରବନ୍ଧ ରଚନା ଜରିଆରେ ବିଶ୍ୱ ସାହିତ୍ୟରେ ବିଖ୍ୟାତ ସାହିତ୍ୟିକମାନଙ୍କୁ ଓଡ଼ିଆ ପାଠକଙ୍କ ନିକଟରେ ପରିଚିତ କରାଇଛନ୍ତି । କମ୍ ବେଶୀରେ ଏହା ତାଙ୍କ ବିଶ୍ୱଦୃଷ୍ଟି ତଥା ଆନ୍ତର୍ଜାତିକ ଚେତନାର ପରିଚୟ ଦିଏ ।

ଭାରତୀୟ ସାହିତ୍ୟିକମାନଙ୍କ ମଧ୍ୟରେ ସେ ତିନିଜଣ ବିଶିଷ୍ଟ କବି ଓ ଲେଖକଙ୍କ ବିଷୟରେ ଆଲୋଚନା ମୂଳକ ପ୍ରବନ୍ଧ ରଚନା କରିଛନ୍ତି । ତାମିଲର ସନ୍ଥକବି ତିରୁଭଲ୍ଲୁଭର, ପ୍ରେମଚନ୍ଦ ତଥା ରବୀନ୍ଦ୍ରନାଥଙ୍କ ସାହିତ୍ୟିକ ଜୀବନ ସଂପର୍କରେ ପ୍ରାବନ୍ଧିକ କାଳିନ୍ଦୀଚରଣ ବିଶେଷ ଆଲୋଚନା କରିଛନ୍ତି ଓ ସେମାନଙ୍କ ସାହିତ୍ୟିକ ଜୀବନର ବୈଶିଷ୍ଟ୍ୟକୁ ଚିହ୍ନଟ କରିଛନ୍ତି । ରବୀନ୍ଦ୍ରନାଥଙ୍କ ଜୀବନ କିପରି ଗୋଟିଏ ଐକ୍ୟବୋଧର ଜୀବନ ଥିଲା ତାହା ଉକ୍ତ 'ରବୀନ୍ଦ୍ର ସାହିତ୍ୟରେ ବିଶ୍ୱମୈତ୍ରୀ' ଶୀର୍ଷକ ପ୍ରବନ୍ଧରେ ପ୍ରାବନ୍ଧିକ କାଳିନ୍ଦୀଚରଣ ପ୍ରତିପାଦନ କରିଛନ୍ତି । ଇଂରେଜ କବି ରଡ଼ିୟାର୍ଡ଼ କିପ୍‌ଲିଙ୍ଗ 'The east is east, The west is west and

twin can never meet' (ପୂର୍ବ ପୂର୍ବ ଓ ପଶ୍ଚିମ ପଶ୍ଚିମ ଏବଂ ଏ ଦୁଇଟି କେବେ ମିଶି ପାରିବେ ନାହିଁ) ବୋଲି ଯାହା ଅଭିମତ ଦେଇଥିଲେ ରବୀନ୍ଦ୍ରନାଥ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ ସଂଭବ ବୋଲି ତାଙ୍କର ଗୋରା ଚରିତ୍ର ଜରିଆରେ ଉଲ୍ଲେଖ କରିଛନ୍ତି ।

କାଳିନ୍ଦୀଙ୍କ ଅଧିକାଂଶ ପ୍ରବନ୍ଧ ସାହିତ୍ୟ-ଆଲୋଚନାମୂଳକ କିଂବା ସେଇପରି ଗୋଟିଏ କାବ୍ୟଭାବ ବିଚ୍ଛୁରିତ ହେଉଥିବା ବିଶ୍ଳେଷଣ । ପ୍ରାବନ୍ଧିକ କାଳିନ୍ଦୀଚରଣ ପ୍ରବନ୍ଧ ରଚନା କ୍ଷେତ୍ରରେ ନିଜ ଉପଲବ୍ଧି ତଥା ଜୀବନାଦର୍ଶର ଅଭିବ୍ୟକ୍ତି ଦେଇଛନ୍ତି । ଏଠାରେ କାଳିନ୍ଦୀଚରଣଙ୍କ ପ୍ରବନ୍ଧ ପାଠ କଲାବେଳେ ଜଣେ ରବୀନ୍ଦ୍ରନାଥଙ୍କ ପ୍ରବନ୍ଧାବଳୀକୁ ସ୍ମରଣକୁ ଆଣେ ଯେ ନିଜର ସୃଜନଶୀଳ ଭାବ-ଭାବନାକୁ ପ୍ରବନ୍ଧରେ ପ୍ରକାଶ କରିଛନ୍ତି । କାଳିନ୍ଦୀଚରଣଙ୍କ ପ୍ରବନ୍ଧଗୁଡ଼ିକ ନିହାତି ଚିନ୍ତାନିଷ୍ଠ ନୁହେଁ, ଯେପରି ରତ୍ନାକର ପତି କିଂବା ବିଶ୍ୱନାଥ କରଙ୍କର ପ୍ରବନ୍ଧସବୁ । ତାଙ୍କର ସତ୍ୟ ଶିବ ସୁନ୍ଦର, କୈଶୋର ଜ୍ଞାନ ଏବଂ ବିଶ୍ୱରୂପ ଦର୍ଶନ ପ୍ରବନ୍ଧଗୁଡ଼ିକ କିନ୍ତୁ ଯେକୌଣସି ଉଚ୍ଚମାନର ଚିନ୍ତାନିଷ୍ଠ ପ୍ରବନ୍ଧପରି ଯେଉଁଠି ପ୍ରାବନ୍ଧିକ ନିଜ ସମୁନ୍ନତ ଚିନ୍ତାଧାରାର ପରିଚୟ ଦେଇଛନ୍ତି ।

କାଳିନ୍ଦୀଚରଣ ତାଙ୍କ ପ୍ରବନ୍ଧ ରଚନାରେ କେବଳ ସାହିତ୍ୟିକ ସମସ୍ୟା ଉପରେ ମୁଖ୍ୟତଃ ଆଲୋକପାତ କରିନାହାନ୍ତି କି କେବଳ ନିଜର ସାହିତ୍ୟ ବିଷୟକ ଉପଲବ୍ଧିକୁ ବ୍ୟକ୍ତ କରିନାହାନ୍ତି । ତା' ସହିତ ବିଶ୍ୱର ବହୁ କ୍ରାନ୍ତିକାରୀ ସାମାଜିକ ଆନ୍ଦୋଳନ, ସାମାଜିକ ବିବର୍ତ୍ତନ, ପରିବର୍ତ୍ତିତ ସଭ୍ୟତା ତଥା ବହୁ ମହାପୁରୁଷଙ୍କ ଜୀବନୀକୁ ସେ ଲେଖିଛନ୍ତି ।

ଗାନ୍ଧିଜୀ ତଥା ରବୀନ୍ଦ୍ରନାଥଙ୍କ ମଧ୍ୟରେ ତୁଳନା ମଧ୍ୟ କରିଛନ୍ତି । ଜାତୀୟ ଆନ୍ଦୋଳନରେ ଉଭୟଙ୍କ ଭୂମିକାର ଗୁରୁତ୍ୱ ବିଷୟରେ ମଧ୍ୟ ସେ ନିଜର ଚିନ୍ତା ବ୍ୟକ୍ତ କରିଛନ୍ତି । ନୂତନ ରାଷ୍ଟ୍ର ସଙ୍ଗଠନରେ ସାହିତ୍ୟର ଦାନକୁ ଅସ୍ୱୀକାର କରିହେବ ନାହିଁ ବୋଲି ରବୀନ୍ଦ୍ରଙ୍କ ଜାତୀୟ ପ୍ରେରଣା ଶୀର୍ଷକ ଲେଖାରେ କାଳିନ୍ଦୀଚରଣ ଉଲ୍ଲେଖ କରିଛନ୍ତି । ଜାତୀୟ ଓ ଆନ୍ତର୍ଜାତୀୟ ସମସ୍ୟା ଉପରେ ମଧ୍ୟ ତାଙ୍କ ପ୍ରବନ୍ଧରେ ଆଲୋକପାତ କରିଛନ୍ତି ।

କାଳିନ୍ଦୀଚରଣଙ୍କ ପ୍ରବନ୍ଧର ଏକ ବଡ଼ ଦିଗ ହେଲା ମଣିଷ ଜୀବନର ନାନା ସୂକ୍ଷ୍ମତର ଅନୁଭବ ବିଷୟରେ ବିଶ୍ଳେଷଣ କରିବା । ତାଙ୍କ 'ସାମୟିକ ସାହିତ୍ୟ ସମୀକ୍ଷା' ପୁସ୍ତକଟିରେ ଛୟାଳିଶ ଗୋଟି କ୍ଷୁଦ୍ର ପ୍ରବନ୍ଧ ସମାବେଶିତ । ଏହି କ୍ଷୁଦ୍ର କ୍ଷୁଦ୍ର ପ୍ରବନ୍ଧଗୁଡ଼ିକୁ ହୁଏତ କାଳିନ୍ଦୀଚରଣଙ୍କର 'ପରଶନାଲ ଏସେ' (ବ୍ୟକ୍ତିଗତ ପ୍ରବନ୍ଧ) ବୋଲି କୁହାଯାଇପାରିବ ।

କାଳିନ୍ଦୀଚରଣ ଯେଉଁ ପ୍ରବନ୍ଧସବୁ ରଚନା କରିଛନ୍ତି ସେଗୁଡ଼ିକ ଅଧିକାଂଶରେ ସାହିତ୍ୟ ଓ ସାହିତ୍ୟାଦର୍ଶମୂଳକ ଆଲୋଚନାମୂଳକ ପ୍ରବନ୍ଧ । ସେହି ସାହିତ୍ୟାଦର୍ଶ ଅଧିକାଂଶରେ ପୁଣି ଆନ୍ତର୍ଜାତୀୟ ସାହିତ୍ୟାଦର୍ଶ । ସେକାଳର ରୁଚି ଓ ଆଦର୍ଶ ଅନୁସାରେ କାଳିନ୍ଦୀଚରଣ ଆଞ୍ଚଳିକ ଓଡ଼ିଆ ସାହିତ୍ୟ ସହ ଭାରତୀୟ ସାହିତ୍ୟ ଓ ବିଶ୍ୱ ସାହିତ୍ୟର ସିଦ୍ଧି ଓ ସମସ୍ୟା ସମ୍ପର୍କରେ ଆଲୋକପାତ କରିଛନ୍ତି । ଏହା ତାଙ୍କ ବୃହତ୍ତର ବିଶ୍ୱଦୃଷ୍ଟିର ପରିଚାୟକ ।

ସାହିତ୍ୟ ବିଚାର କାଳିନ୍ଦୀଚରଣଙ୍କର ଏକ ଉଲ୍ଲେଖଯୋଗ୍ୟ ପ୍ରବନ୍ଧ ସଂକଳନ । ଏକୋଇଶିଗୋଟି ପ୍ରବନ୍ଧଯୁକ୍ତ ଏହି ସଂକଳନ କାଳିନ୍ଦୀଚରଣଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି ଓ ସାହିତ୍ୟିକ ଅଭିରୁଚିର ପରିଚୟ ଦିଏ । ବିଶ୍ୱ ବିଦ୍ୟାଳୟ ତଥା ମହାବିଦ୍ୟାଳୟର ବିଭିନ୍ନ ଶ୍ରେଣୀମାନଙ୍କରେ କାଳିନ୍ଦୀଚରଣଙ୍କ ସାହିତ୍ୟ ଓ ସଂସ୍କୃତି ବିଚାରମୂଳକ ଅନେକ ଚିନ୍ତାନିଷ୍ଠ ପ୍ରବନ୍ଧ ପାଠ୍ୟ ରୂପେ ପ୍ରଚଳିତ । ତାଙ୍କର 'ସାହିତ୍ୟର କାଉଁରି କାଠି', 'ତ୍ୟାଗ ଓ ପ୍ରେମ', 'ସତ୍ୟ ଶିବ ସୁନ୍ଦର' ଓ 'ବେଗ ହିଁ ଉନ୍ନତିର ଲକ୍ଷଣ' ଆଦି ଆଲୋଚନାମୂଳକ ପ୍ରବନ୍ଧ ଅତି ଉଚ୍ଚକୋଟୀର । ସେ ବିଜ୍ଞାନର ଅଗ୍ରଗତି, ସଭ୍ୟତାର ବିକାଶ ଓ ସାମାଜିକ ବିବର୍ତ୍ତନ ପ୍ରକ୍ରିୟାକୁ ନାନା ଭାବରେ ଲକ୍ଷ୍ୟ କରିଛନ୍ତି ।

କାଳିନ୍ଦୀଚରଣ ତାଙ୍କ ଦୀର୍ଘ ସାହିତ୍ୟିକ ଜୀବନରେ ଲେଖିବାଠାରୁ ପଢ଼ୁଥିଲେ ବେଶୀ । ବିଶ୍ୱର ଚିନ୍ତା ବିପ୍ଳବର ଇତିହାସ ସହିତ ପରିଚିତ ହେବାପାଇଁ ତାଙ୍କର ଯଥେଷ୍ଟ ଉତ୍ସୁକତା ଥିଲା । ରବୀନ୍ଦ୍ର ଗଳ୍ପର ବିଶେଷତ୍ୱ, ଲେଖକର ଆଶ୍ଚର୍ଯ୍ୟ ଟଲଷ୍ଟୟ, ହିନ୍ଦୀ ସାହିତ୍ୟର କଥାସମ୍ରାଟ ପ୍ରେମଚନ୍ଦ ଆଦି ପ୍ରବନ୍ଧ ତାଙ୍କ ମାର୍ଜିତ ସାହିତ୍ୟରୁଚିର ପରିଚୟ ଦିଏ । କାଳିନ୍ଦୀଚରଣ ଟଲଷ୍ଟୟ, ରବୀନ୍ଦ୍ରନାଥ, ପ୍ରେମଚନ୍ଦ, ବୋରିସ୍ ପାଷ୍ଟରନାକ୍, ମାର୍କଟୁଏନ ପ୍ରମୁଖଙ୍କୁ ସେମାନଙ୍କର ସାହିତ୍ୟ ସାଧନା ପାଇଁ ଅଧିକ ମାନ୍ୟତା ଦେଇଛନ୍ତି ।

'ସାହିତ୍ୟ ବିଚାର' ସଂକଳନରେ ଜଣେ ମଣିଷ 'ବିରୋଧାଭାସ', 'ସାହିତ୍ୟରେ ପରିବର୍ତ୍ତିତ ଭାବବୋଧ', 'ପ୍ରାଚୀନ ଭାରତର ବିଦୁଷୀ', 'ସାହିତ୍ୟରେ ବ୍ୟବସାୟ', 'ସଭ୍ୟତାର ପହିଲି ପେସା', 'କୈଶୋର ସ୍ଥାନ', 'ମହେଞ୍ଜୋଦାରୋ', 'ଦକ୍ଷିଣାୟନ' ଆଦି ପ୍ରବନ୍ଧ କାଳିନ୍ଦୀଚରଣଙ୍କ ଚିନ୍ତା ଓ ଚେତନାର ସ୍ମାରକୀ । ଏହି ସବୁ ପ୍ରବନ୍ଧ ଜରିଆରେ ସେ ନିଜର ସାହିତ୍ୟିକ ଅଭିରୁଚି ପ୍ରଦାନ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ପାଠକୀୟ ମନ୍ତବ୍ୟ ମଧ ଦେଇଛନ୍ତି । ଏତଦ୍‌ଭିନ୍ନ ଏହିସବୁ ପ୍ରବନ୍ଧରେ ସେ ଓଡ଼ିଶା ସାହିତ୍ୟ ଇତିହାସ ଓ ସାଂସ୍କୃତିକ ଧାରା ସମ୍ପର୍କରେ ଆଲୋଚନା କରିଛନ୍ତି । ତାଙ୍କର ସାହିତ୍ୟିକ ଅଭିରୁଚି ଆପେକ୍ଷିକ ଭାବେ ସାମାଜିକ ବାସ୍ତବତା ସହିତ ସମ୍ବନ୍ଧିତ ଥିଲା । ସେ ବସ୍ତୁତଃ ସ୍ୱପ୍ନପ୍ରବଣ ସବୁଜଯୁଗର କବି ହୋଇଥିଲେ ହେଁ ତାଙ୍କର ସାହିତ୍ୟିକ ରୁଚି ଓ ଆଦର୍ଶ ଥିଲା ଅଧିକ ବାସ୍ତବବାଦୀ ଓ ଯୁଗୋପଯୋଗୀ । ତାଙ୍କ ପ୍ରବନ୍ଧମାନଙ୍କରେ ତାଙ୍କ ସାମାଜିକ ଦୃଷ୍ଟିଭଙ୍ଗୀ ଓ ସଂସ୍କାରପ୍ରୟାସର ଆଭାସ ଅତ୍ୟନ୍ତ ସୁସ୍ପଷ୍ଟ । ତାଙ୍କ ପ୍ରବନ୍ଧଗୁଡ଼ିକର ଶୈଳୀ ଅତ୍ୟନ୍ତ ସାବଲୀଳ ଓ ସୁଖପାଠ୍ୟ ।

କାଳିନ୍ଦୀଚରଣ 'ସାହିତ୍ୟବଲ୍ଲଭ ଆର୍ତ୍ତବଲ୍ଲଭ', 'କବି ଗଙ୍ଗାଧର', 'ଫକିରମୋହନଙ୍କ ଚରିତ୍ର ଚିତ୍ରଣ' ଆଦି ପ୍ରବନ୍ଧରେ ତାଙ୍କର ପ୍ରତିଭାଶାଳୀ ଲେଖକମାନଙ୍କ ପ୍ରତି ସାରସ୍ୱତ ମାନ୍ୟତା ଓ ସ୍ୱୀକୃତି ବେଶ୍ ଦୃଷ୍ଟାନ୍ତମୂଳକ ।

କାଳିନ୍ଦୀଚରଣ ଗାଳ୍ପିକ ତଥା ଔପନ୍ୟାସିକ ଭାବେ କେବଳ ଜଣେ ଉଚ୍ଚମାନର ଗଦ୍ୟଶିଳ୍ପୀ ଥିଲେ ତା' ନୁହେଁ, ସେ ଥିଲେ ଅଧିକ ଭାବରେ ଜଣେ ଉଚ୍ଚମାନର ସାହିତ୍ୟ ସମାଲୋଚକ ଓ ପ୍ରାବନ୍ଧିକ ମଧ । ତାଙ୍କ ପ୍ରବନ୍ଧ ତାଙ୍କ ଆତ୍ମାର ଅଭିଳିପି ଥିଲା ଯେପରି । ତାଙ୍କ ପ୍ରବନ୍ଧରେ

ସଂସ୍ଥାପିତ ଯୁକ୍ତିସବୁ ତାଙ୍କ ସୃଜନଶୀଳ ଆତ୍ମାର ସମର୍ଥନ ଲାଭ କରିଥିଲା । କାଳିନ୍ଦୀଚରଣଙ୍କ ପ୍ରବନ୍ଧଗୁଡ଼ିକରୁ ତାଙ୍କ ଅଗ୍ରଗାମୀ ଚିନ୍ତନର ପରିଚୟ ମିଳେ । ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ, ଯଦିଓ କାଳିନ୍ଦୀଚରଣ ସବୁଜ ଯୁଗପରି ଏକ ସ୍ୱୈରବାଦୀ ଯୁଗର କବି ଥିଲେ ମାନବ ସମାଜର ପ୍ରଗତି ଓ ମୁକ୍ତି ପାଇଁ ସେ କିନ୍ତୁ ସ୍ୱର ଉତ୍ତୋଳନ କରିଛନ୍ତି । ଦଳିତ ନିମ୍ନବର୍ଗର ନିପୀଡ଼ିତ ମଣିଷମାନଙ୍କ ପାଇଁ ଥିବା ତାଙ୍କର ସମ୍ବେଦନଶୀଳତା ତାଙ୍କ ସାହିତ୍ୟରେ ନାନା ଭାବରେ ପ୍ରତୀକିତ ହୋଇଛି । ତାଙ୍କ ଗଳ୍ପ କବିତା ବ୍ୟତୀତ ତାଙ୍କ ପ୍ରବନ୍ଧ ଓ ସମାଲୋଚନାରେ ତାଙ୍କ ସମ୍ବେଦନଶୀଳତା ଓ ମାନବପ୍ରେମ ସୂଚିତ ହୋଇଛି ।

ବିଶ୍ୱ ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧା ଓ ଉନ୍ମୁଖତା ତାଙ୍କ ପ୍ରବନ୍ଧ ସାହିତ୍ୟର ଅନ୍ୟଏକ ବିଶିଷ୍ଟ ଦିଗ । ତାଙ୍କର ହେତୁବାଦୀ ଚିନ୍ତନ, ବିଶ୍ୱଦୃଷ୍ଟି ଓ ମାନବପ୍ରେମ ତାଙ୍କ ପ୍ରବନ୍ଧ ସାହିତ୍ୟକୁ ଉଚ୍ଚମାନର କରିଛି ।

# ନାଟ୍ୟକାର ଓ ଏକାଙ୍କିକାଲେଖକ କାଳିନ୍ଦୀଚରଣ

କାଳିନ୍ଦୀଚରଣ ଯେପରି ଜଣେ ବଡ଼ କବି, ଓଡ଼ିଆ କଥା ସାହିତ୍ୟ ଧାରାରେ ସେହିପରି ଜଣେ ପ୍ରଖ୍ୟାତ କଥାଶିଳ୍ପୀ । ଜଣେ ପ୍ରାବନ୍ଧିକ, ସମାଲୋଚକ ଭାବେ ପୁଣି ତାଙ୍କର ଯେଉଁ ସୁକୃତି ରହିଛି ସେହିପରି ଜଣେ ସଫଳ ନାଟ୍ୟକାର ତଥା ଏକାଙ୍କିକା ଲେଖକଭାବେ ମଧ ତାଙ୍କର ପ୍ରତିଭା ଚିହ୍ନିତ ।

କାଳିନ୍ଦୀଚରଣଙ୍କ ଲେଖନୀ ଥିଲା ଅଜସ୍ରସ୍ରାବୀ । ସେ ରବୀନ୍ଦ୍ରଙ୍କ ପରି ପ୍ରତିଟି ସାହିତ୍ୟ ବିଭାବ ଉପରେ ଲେଖନୀ ଚାଳନା କରିଛନ୍ତି ।

'ପ୍ରିୟଦର୍ଶୀ' କାଳିନ୍ଦୀଚରଣଙ୍କ ରଚିତ ଏକ ସଫଳ ଐତିହାସିକ ନାଟକ । ଅଶୋକଙ୍କ ଜୀବନ ରୂପାୟିତ ହୋଇଥିବା ଏହାକୁ ଏକ ଚରିତ ନାଟକ (Biographical play) ବୋଲି କୁହାଯାଇପାରେ । ବୁଦ୍ଧଙ୍କର ଅହିଂସାବାଣୀ ପ୍ରଚାର କରିବା ପାଇଁ ଅଶୋକ ଯେଉଁ ଉତ୍ସର୍ଗର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ତାହାହିଁ ନାଟକର ମୁଖ୍ୟ ବିଷୟବସ୍ତୁ । ଏତଦ୍‌ଭିନ୍ନ ରାଜା ଅଶୋକଙ୍କ ଆଦର୍ଶ ତଥା ପ୍ରଜାପାଳନ ନୀତି ଉକ୍ତ ନାଟକରେ ପ୍ରଖ୍ୟାପିତ ହୋଇଛି ।

ରାଧାଗୁପ୍ତ, ଗଣଭଟ୍ଟ, କୁନାଳ, ସଙ୍ଘମିତ୍ରା, ନୀହାରିକା, ତୁଳସୀ, ଜୟପାଳ ଆଦି ଚରିତ୍ର ଏହି ପ୍ରିୟଦର୍ଶୀ ନାଟକରେ ପରିଲକ୍ଷିତ ହୋଇଛନ୍ତି । ଭାରତ ଇତିହାସର ବୁଦ୍ଧଙ୍କ ବାଣୀ ପ୍ରଚାର କରିବା ପାଇଁ ଶେଷରେ ଜଣେ ଦୁର୍ଦ୍ଦାନ୍ତ ରାଜା କିପରି ଏକାନ୍ତ ଆତ୍ମୋତ୍ସର୍ଗ କରି ଯାଇଛନ୍ତି ତାହାହିଁ ଏଠାରେ ନାଟକୀୟ ଭାବେ ବର୍ଣ୍ଣିତ ହୋଇଛି ।

ଏହି ନାଟକର ବିଷୟ-ବିନ୍ୟାସ ଭିତରେ ଭୟାବହ କଳିଙ୍ଗଯୁଦ୍ଧର ଅବତାରଣା କରାଯାଇଛି । ସମୁଦାୟ ନାଟକଟି ପାଞ୍ଚୋଟି ଦୃଶ୍ୟରେ ବିଭକ୍ତ ହୋଇଛି । ନାଟକର ଘଟଣା ଅତ୍ୟନ୍ତ ଲୋକ ପରିଚିତ । ମାତ୍ର ସାର୍ଥକ ଚରିତ୍ରାନୁଶୀଳନ ହିଁ ଏ ନାଟକର ବିଶେଷତ୍ୱ ।

'ପ୍ରିୟଦର୍ଶୀ' କାଳିନ୍ଦୀଚରଣଙ୍କ ଏକ ସଫଳ ନାଟକ, ଯେଉଁଥିରେ ଚଣ୍ଡାଶୋକ ଅଶୋକ ଧର୍ମାଶୋକରେ ପରିଣତ ହେବା ବିଷୟଟି ବର୍ଣ୍ଣିତ ହୋଇଛି । ନାଟକଟିକୁ ତା'ର ଐତିହାସିକ ବିଷୟବସ୍ତୁ ଦୃଷ୍ଟିରୁ ଯେତେ ବିଚାର କରିହେବନି ସେତେବେଶୀ ନାଟ୍ୟକାର କାଳିନ୍ଦୀଚରଣଙ୍କ ଭାବାଦର୍ଶପ୍ରବଣତାକୁ ପ୍ରତ୍ୟକ୍ଷ କରିହେବ ।

ନାଟକଟିରେ ନାଟ୍ୟକାର କାଳିନ୍ଦୀଚରଣ ତାଙ୍କର କବିମନ ନେଇ ପ୍ରିୟଦର୍ଶୀ ଅଶୋକଙ୍କ ଚରିତ୍ର ଚିତ୍ରଣ କରିଛନ୍ତି । ଅଶୋକ ଯୁଦ୍ଧକୁ କିପରି କ୍ରୀଡ଼ାଜ୍ଞାନ କରୁଥିଲେ ତା'ର ସୂଚନା ଏହି ନାଟକରେ ଦିଆଯାଇଛି । 'ପ୍ରିୟଦର୍ଶୀ' ନାଟକର ଗୋଟିଏ ସଂଳାପରେ ସଙ୍ଘମିତ୍ରା କହିଛି - 'ଆଉ କ'ଣ କଳିଙ୍ଗ ଯୁଦ୍ଧ ? କଳିଙ୍ଗ ଯୁଦ୍ଧରେ ସେ କ୍ଳାନ୍ତ ହୋଇ ପଡ଼ିବେ ! ଯୁଦ୍ଧ ଯେ ତାଙ୍କର କ୍ରୀଡ଼ାଠାରୁ ମଧ ଅଧିକ ଆହ୍ଲାଦର ସାମଗ୍ରୀ ।'

ସିଂହଳରେ ବୌଦ୍ଧଧର୍ମ ପ୍ରଚାର କରିବା ପାଇଁ ଆଦିଷ୍ଟ ହୋଇଥିବା କୁନାଳ କହିଛି, XX 'କ୍ରୀଡ଼ାରେ ମଧ ମନୁଷ୍ୟର କ୍ଳାନ୍ତି ଆସେ । ଐଶ୍ୱର୍ଯ୍ୟ ବିଭୂତି, ଖ୍ୟାତି, କ୍ଷମତା, ସ୍ୱାସ୍ଥ୍ୟ

ସୌନ୍ଦର୍ଯ୍ୟ - କେଉଁଠାରେ ତା'ର କ୍ଳାନ୍ତି ନାହିଁ । ବାରମ୍ବାର ନିଜକୁ ଠକି ସେ କ୍ଳାନ୍ତିକୁ ଆମେ ଦୂରରୁ ଦୂରକୁ ଠେଲି ନେଉ; କିନ୍ତୁ ଅଳକ୍ଷ୍ୟରେ ତାହା ମଧ୍ୟେ ମଧ୍ୟେ ଆମକୁ ଗ୍ରାସ କରି ବସେ - ଜଗତର ସବୁ ତ୍ରୁଟି ଅଭାବ ପାଇଁ ନିଜକୁ ହିଁ ଦିନେ ଦାୟୀ ବୋଲି ଜ୍ଞାନ କରୁ । ଯାହାର ଆହାର କରୁ, ଉପାର୍ଜନ କରୁ, ତାକୁ ମଧ ଦିନେ ଅପହରଣ ବୋଲି ମନେକରୁ ।'

ତାଙ୍କର ସମକାଳୀନ କାଳିଚରଣ ପଟ୍ଟନାୟକ, ପ୍ରାଣବନ୍ଧୁ କର, ନିତ୍ୟାନନ୍ଦ ମହାପାତ୍ର, ଶ୍ରଦ୍ଧାକର ସୂପକାର, ହରେକୃଷ୍ଣ ମହତାବ ପ୍ରମୁଖ ଯେଉଁ ଏକାଙ୍କିକା ଓ ନାଟକମାନ ରଚନା କରିଛନ୍ତି ସେ ଧାରାରେ କାଳିନ୍ଦୀଚରଣ ସେତେବେଶୀ ଏକ ପ୍ରତିଷ୍ଠିତ ନାମ ନୁହେଁ । କାରଣ କାଳିନ୍ଦୀଚରଣ କବି, ଗାଳ୍ପିକ, ଔପନ୍ୟାସିକ ତଥା ସମାଲୋଚକ ଭାବେ ଯେପରି ପ୍ରତିଷ୍ଠିତ ଏକାଙ୍କିକା ଲେଖକ କିଂବା ନାଟ୍ୟକାର ଭାବେ ସେପରି ପ୍ରତିଷ୍ଠିତ ନୁହନ୍ତି ।

କାଳିନ୍ଦୀଚରଣ ପ୍ରିୟଦର୍ଶୀ ନାଟକ ଭିନ୍ନ 'ସୌମ୍ୟା' ଓ 'ପଦ୍ମିନୀ' ପ୍ରଭୃତି ନାଟକ ମଧ ରଚନା କରିଛନ୍ତି । ଏସବୁ ନାଟକ ମୁଖ୍ୟତଃ ଅଧିକ କାବ୍ୟାତ୍ମକ, ଯାହା ଅଧିକ ପଠନଯୋଗ୍ୟ । ରଙ୍ଗମଞ୍ଚର ଉପଯୋଗୀ ହେବା ପାଇଁ ବୋଧହୁଏ ସେ ନାଟକ ଲେଖୁନଥିଲେ ।

ଏ ନାଟକଗୁଡ଼ିକ ମଞ୍ଚରେ ଅଭିନୀତ ହେବାପାଇଁ ପ୍ରାୟ ଉପଯୁକ୍ତ ହୋଇପାରିନି । କାଳିନ୍ଦୀଚରଣଙ୍କ ଏହି ନାଟକଗୁଡ଼ିକ ବସ୍ତୁତଃ କାବ୍ୟପ୍ରଧାନ ନାଟକ ଶ୍ରେଣୀର । ସେଥିପାଇଁ ନାଟକର ରଙ୍ଗମଞ୍ଚ ଅଭିବ୍ୟକ୍ତିରେ ଏ ନାଟକଗୁଡ଼ିକର କୌଣସି ଅବଦାନ ନାହିଁ ।

ନାଟକ ରଚନା କରିଥିଲେ ମଧ କାଳିନ୍ଦୀଚରଣ ମୂଳ କାବ୍ୟ-ଆବେଗଟିକୁ ପରିହାର କରିପାରି ନଥିଲେ । ନାଟକର ଭାବଭାଷା ଚିତ୍ରଚରିତ୍ର ସବୁକିଛି କାବ୍ୟାତ୍ମକ ହୋଇ ଯାଇଛି । ପ୍ରିୟଦର୍ଶୀ ନାଟକରେ କାଳିନ୍ଦୀଚରଣ ଯଥେଷ୍ଟ ଦୀର୍ଘ କାବ୍ୟିକ ସଂଳାପ ସଂଯୋଜନା କରିଛନ୍ତି ।

# ସମାଲୋଚକ କାଳିନ୍ଦୀଚରଣ

କାଳିନ୍ଦୀଚରଣ ଓଡ଼ିଶାର ଜଣେ ବିଶିଷ୍ଟ ଭାବବାଦୀ ସମାଲୋଚକ । ସମାଲୋଚନାର ଇଂରାଜୀ ପରିଭାଷା ହେଉଛି 'Critical Appreciation' । କାଳିନ୍ଦୀଚରଣଙ୍କ ସାହିତ୍ୟ ସମାଲୋଚନା ବସ୍ତୁତଃ ଏହି ଏପ୍ରିସିଏସନ ପର୍ଯ୍ୟାୟର । ନିଜର ସପ୍ରଶଂସ ଆତ୍ମଭାବ ମୁଖ୍ୟତଃ ତାଙ୍କ ସମାଲୋଚନାରେ ପ୍ରକଟିତ ହୋଇଛି । ତାଙ୍କର କେତେଗୁଡ଼ିଏ ଚିନ୍ତାନିଷ୍ଠ ପ୍ରବନ୍ଧ ରହିଛି ଯେଉଁଥିରେ କାବ୍ୟସିଦ୍ଧାନ୍ତ ସମ୍ପର୍କିତ ତାଙ୍କ ନିଜସ୍ୱ ମତାମତ ପ୍ରତିଫଳିତ ହୋଇଛି । ଜଣେ କବି ହେଉ ବା ଗଦ୍ୟ ଲେଖକ ହେଉ ତାଙ୍କ ନିଜର ସାହିତ୍ୟ ସଂପର୍କିତ କିଛି ବିଶ୍ୱାସ ବା ଉପଲବ୍ଧି ରହିଥାଏ । ବିଭିନ୍ନ ଅବସରରେ ତାହା ଅବଶ୍ୟ ଅଭିବ୍ୟକ୍ତି ଲାଭ କରିଥାଏ ।

କାଳିନ୍ଦୀଚରଣ ଜଣେ ସୃଜନଶୀଳ ସମାଲୋଚନା (Creative Criticism)ର ଲେଖକ । ରବୀନ୍ଦ୍ରନାଥଙ୍କ ନିବନ୍ଧମାଳା ପରି କାଳିନ୍ଦୀଚରଣ ନିଜର ସାହିତ୍ୟିକ ମତ ଓ ମନ୍ତବ୍ୟକୁ ତାଙ୍କ ସାହିତ୍ୟ ଆଲୋଚନାମୂଳକ ପ୍ରବନ୍ଧରେ ଲିପିବଦ୍ଧ କରିଯାଇଛନ୍ତି । କାଳିନ୍ଦୀଚରଣ ଉଭୟ ଗଦ୍ୟ ଓ ପଦ୍ୟ ରଚନାରେ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ସେ ଗଦ୍ୟ ଓ ପଦ୍ୟରେ ବିପୁଳ ସାହିତ୍ୟ ସୃଷ୍ଟି କରିଛନ୍ତି । ସବୁ ପ୍ରାୟ ସଫଳ ଓ ସୁଖପାଠ୍ୟ ହୋଇଛି ।

ତାଙ୍କର ସାହିତ୍ୟ-ସମାଲୋଚନାମୂଳକ ପ୍ରବନ୍ଧ ଅଧିକାଂଶରେ ଧାରଣାନିଷ୍ଠ (Conceptual) । ଓଡ଼ିଆ ସାହିତ୍ୟର ପରମ୍ପରା, ଲାବଣ୍ୟବତୀରେ ଉପେନ୍ଦ୍ରଭଞ୍ଜ, ଫକିର ମୋହନଙ୍କ ଚରିତ୍ର ଚିତ୍ରଣ, ହିନ୍ଦୀ ସାହିତ୍ୟରେ କଥାସମ୍ରାଟ ପ୍ରେମଚନ୍ଦ, ତାମିଲ ସାହିତ୍ୟର ଶ୍ରେଷ୍ଠକବି, ସାହିତ୍ୟରେ ବ୍ୟବସାୟ, ରବୀନ୍ଦ୍ର ସାହିତ୍ୟରେ ବିଶ୍ୱପ୍ରେମ ଇତ୍ୟାଦି ଅନେକ ସାହିତ୍ୟ-ସମାଲୋଚନାମୂଳକ ପ୍ରବନ୍ଧ ୧୯୬୦ରେ ପ୍ରକାଶିତ ତାଙ୍କ 'ପ୍ରବନ୍ଧ ସାହିତ୍ୟ' ଗ୍ରନ୍ଥରେ ସ୍ଥାନିତ ହୋଇଛି । ଏହି ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧଗୁଡ଼ିକ କାଳିନ୍ଦୀଚରଣଙ୍କ ସାହିତ୍ୟିକ ଅଭିରୁଚି, ସୌନ୍ଦର୍ଯ୍ୟଦୃଷ୍ଟି ତଥା ବହୁଶାସ୍ତ୍ରଦର୍ଶିତାର ପ୍ରମାଣ । ସେ ଓଡ଼ିଆ ସାହିତ୍ୟ ଭିନ୍ନ ଅନ୍ୟାନ୍ୟ ଭାରତୀୟ ଭାଷାରେ ରଚିତ ସାହିତ୍ୟ ପଠନ ପ୍ରତି ଅଧିକ ଆଗ୍ରହୀ ଥିଲେ । ଶ୍ରଦ୍ଧା ଓ ଅନୁରାଗର ସହିତ ସେ ପ୍ରେମଚନ୍ଦ ଓ ରବୀନ୍ଦ୍ରନାଥଙ୍କ ସାହିତ୍ୟ ସମ୍ପର୍କରେ ଆଲୋଚନା କରିଛନ୍ତି । ସେ ଭଞ୍ଜୀୟ କାବ୍ୟାଦର୍ଶର ପ୍ରଶଂସା କରି ତାଙ୍କ 'ଲାବଣ୍ୟବତୀରେ ଉପେନ୍ଦ୍ରଭଞ୍ଜ' ପ୍ରବନ୍ଧ ରଚନା କରିଛନ୍ତି । ସେ କାଳରେ ଉପେନ୍ଦ୍ର ଭଞ୍ଜ ସଂକୀର୍ଣ୍ଣ ପ୍ରାଦେଶିକତାର ପରିଚୟ ଦେଇ ନାହାନ୍ତି । ଉପେନ୍ଦ୍ରଙ୍କ ଚିତ୍ରିତ ନାରୀପୁରୁଷ ସମସ୍ତେ ସୁନ୍ଦର ।

ଓଡ଼ିଆ ସାହିତ୍ୟର ସୁଦୀର୍ଘ ପରମ୍ପରା ବିଷୟ ବର୍ଣ୍ଣନା କରି କାଳିନ୍ଦୀଚରଣ ତାଙ୍କ 'ଓଡ଼ିଆ ସାହିତ୍ୟର ପରମ୍ପରା' ଶୀର୍ଷକ ପ୍ରବନ୍ଧରେ ଲେଖିଛନ୍ତି, 'ସବୁ ଯୁଗରେ ସାହିତ୍ୟ ହେଲା ସମାଜର ଦର୍ପଣ । ସାହିତ୍ୟ ଭିତରେ ଆମେ ସମାଜର ମୁହଁ ଦେଖୁଁ । ସମାଜ ଉଚ୍ଚସ୍ତରରେ ଥିବା ବେଳେ ଉଚ୍ଚ ସାହିତ୍ୟର ସୃଷ୍ଟିହୁଏ । ଏହିଭଳି ଅବସ୍ଥାରେ ଓଡ଼ିଆ ସାହିତ୍ୟର ଜନ୍ମ ଆଉ ଉନ୍ନତି । ସେତେବେଳେ ଓଡ଼ିଶାରେ ରାଜତ୍ୱ କରୁଥାନ୍ତି ଆଦର୍ଶ ସମ୍ରାଟ କପିଳେନ୍ଦ୍ର ଦେବ । ମହାନ୍ ସଂସ୍କୃତ ସାହିତ୍ୟର ଗଣ୍ଡି ଭିତରୁ ଉଠୁରି ସେତିକିବେଳେ ଓଡ଼ିଆ ସାହିତ୍ୟ ତାହାର ନିଜ ରୂପ

ପ୍ରକଟ କଲା । ଶୂଦ୍ରମୁନି ସାରଳାଦାସ ବଜାଇଲେ ତାହାର ପ୍ରଥମ ଡିଣ୍ଡିମ; କପିଳେନ୍ଦ୍ରଙ୍କ ସମୟରେ ଆଦର୍ଶ ସମାଜର ଦର୍ପଣକୁ ସେ ଟେକି ଧରିଲେ ତାଙ୍କର ଚଣ୍ଡୀ ପୁରାଣ, ବିଲଙ୍କା ରାମାୟଣ ଭଳି ଆଉ କେତେଗୁଡ଼ିଏ ଗ୍ରନ୍ଥ ଭିତରେ । 'ସାରଳା ମହାଭାରତ' ଆଜି ବି ସେହି ଦର୍ପଣଧରି ଆମ ଆଗରେ ଠିଆ ହୋଇଛି ।

କାଳିନ୍ଦୀଚରଣ 'ମଥୁରାମଙ୍ଗଳ ସମାଲୋଚନା' ତଥା 'ଭକ୍ତକବି ମଧୁସୂଦନ' ଶୀର୍ଷକ ଦୁଇଟି ସାହିତ୍ୟ-ଆଲୋଚନାମୂଳକ ପ୍ରବନ୍ଧ ରଚନା କରିଛନ୍ତି । ଏହି ଦୁଇଟି ଉଚ୍ଚକୋଟୀର ବିଶ୍ଳେଷଣାତ୍ମକ ପ୍ରବନ୍ଧ । 'ଭକ୍ତକବି ମଧୁସୂଦନ' ଶୀର୍ଷକ ପ୍ରବନ୍ଧରେ ସେ ମଧୁସୂଦନଙ୍କ କବିତାର ସାଧାରଣ ବର୍ଗୀକରଣ କରିଛନ୍ତି । ମଧୁସୂଦନ ଶିଶୁକବିତା, ଧର୍ମ ବିଷୟକ କବିତା, ପ୍ରକୃତି ବର୍ଣ୍ଣନାମୂଳକ କବିତା, ସାଙ୍ଗୀତିକ କବିତା ତଥା ବ୍ୟଙ୍ଗ କବିତା ଲେଖିଛନ୍ତି ବୋଲି କାଳିନ୍ଦୀଚରଣ ଉଲ୍ଲେଖ କରିଛନ୍ତି । 'ଋଷିପ୍ରାଣେ ଦେବାବତରଣ' ଓ 'ହିମାଚଳେ ଉଦୟଉତ୍ସବ' କବିତା ଦୁଇଟିକୁ ମଧୁସୂଦନଙ୍କର ସର୍ବୋତ୍ତମ କବିତା ବୋଲି ପ୍ରାବନ୍ଧିକ କାଳିନ୍ଦୀଚରଣ ଅଭିହିତ କରିଛନ୍ତି । ଏହି ପ୍ରବନ୍ଧଟି ତାଙ୍କର ୧୯୨୮ ମସିହାରେ ପ୍ରକାଶିତ ହୋଇଥିଲା ଯାହା ପରବର୍ତ୍ତୀ ସମୟରେ ମଧୁସୂଦନ ଗ୍ରନ୍ଥାବଳୀର ମୁଖବନ୍ଧ ରୂପେ ସଂଯୋଜିତ ହୋଇଛି । ସମାଲୋଚକ କାଳିନ୍ଦୀଚରଣ ବିଷାଦବାଦୀ ରାଧାନାଥଙ୍କ ସହିତ ଆଶା ଓ ଆନନ୍ଦବାଦୀ ମଧୁସୂଦନଙ୍କୁ ତୁଳନା କରିଛନ୍ତି । ମଧୁସୂଦନଙ୍କ କେତେକ କବିତାରେ ବିଷାଦବାଦୀ ଅନୁଚିନ୍ତା ଥିଲେ ହେଁ ଆନନ୍ଦବାଦ ହେଉଛି ସାମଗ୍ରିକ ଭାବେ ତାଙ୍କ କବିତାର କାବ୍ୟସ୍ୱର ।

ଭଞ୍ଜଙ୍କ ଛନ୍ଦ ଓ ଶବ୍ଦ ଯୋଜନା କେତେକାଂଶରେ ଉଭୟ ରାଧାନାଥ ଓ ମଧୁସୂଦନଙ୍କ କବିତାରେ ପରିଲକ୍ଷିତ ହୁଏ ବୋଲି ସେ ପ୍ରକାଶ କରିଛନ୍ତି । ରାଧାନାଥ ଯେତେବେଳେ ଭଞ୍ଜୀୟ କାବ୍ୟ ପରମ୍ପରାର ଉତ୍ତର ସାଧକ ରୂପେ ଭାଷାର କିଛି ସଂସ୍କାର ଆଣିଛନ୍ତି ଓ କାବ୍ୟଭାଷାକୁ ଯଥାସମ୍ଭବ ଅନଳଙ୍କୃତ କରିବାକୁ ଚେଷ୍ଟା କରିଛନ୍ତି ସେତେବେଳେ ମଧୁସୂଦନ ନିଜର ସୌନ୍ଦର୍ଯ୍ୟ ଦୃଷ୍ଟି ତଥା ପରିଶୀଳିତ ରୁଚିବୋଧ ଉପରେ ଗୁରୁତ୍ୱ ଦେଇଛନ୍ତି । ଉଭୟ ରାଧାନାଥ ଓ ମଧୁସୂଦନ ଓଡ଼ିଆ ସାହିତ୍ୟର ସମୃଦ୍ଧି ସାଧନ କରିଥିଲେ ହେଁ ସମାଲୋଚକ କାଳିନ୍ଦୀଚରଣଙ୍କ ବିଚାରରେ ତାହା ଭିନ୍ନ ଭିନ୍ନ ଥିଲା । ରାଧାନାଥ ସେତେବେଶୀ ରୁଚି ଅରୁଚି, ନୀତି ଅନୀତି ସମ୍ପର୍କରେ ସଚେତନ ନଥିଲେ । ସେଥିପାଇଁ ସେ କେତେକ ନୀଚ ଓ ପରମ୍ପରାବିରୋଧୀ ପ୍ରେମ ଓ ପ୍ରଣୟ ପ୍ରସଙ୍ଗ ଅବତାରଣା କରିଛନ୍ତି । ମଧୁସୂଦନ ସେ ବିଷୟରେ ସଚେତନ ହୋଇଥିବା କାରଣରୁ ତାହା ତାଙ୍କ ସାହିତ୍ୟରେ ପ୍ରାୟ ସୁଲଭ ନୁହେଁ । ରାଧାନାଥ ଯେତେବେଳେ ନିଛକ କଳା ଓ ସୌନ୍ଦର୍ଯ୍ୟ ସପକ୍ଷରେ ଯୁକ୍ତି କରିଛନ୍ତି ମଧୁସୂଦନ ସେତେବେଳେ ଅଧିକ ନୀତି ଓ ଔଚିତ୍ୟ ସଚେତନ ହୋଇଛନ୍ତି । ଏହି ସମ୍ପର୍କରେ ସମାଲୋଚକ କାଳିନ୍ଦୀଚରଣ ଲେଖିଛନ୍ତି, 'ରାଧାନାଥ ଓ ମଧୁସୂଦନଙ୍କୁ ଇଂରେଜ କବି ଶେଲୀ (Shelly) ଏବଂ ୱାର୍ଡ଼ସୱାର୍ଥ (Wordsworth)ଙ୍କ ସହିତ ତୁଳନା କରାଯାଇପାରେ । ଶେଲୀଙ୍କ ପରି ରାଧାନାଥ ଅନୁଭୂତିର କବି, ଯେଉଁ କବି ନିରାଟ ଅନୁଭୂତିପ୍ରଧାନ, ସେ ଜୀବନଟାକୁ ବିୟୋଗାନ୍ତକ ନାଟକ ରୂପରେ ଦର୍ଶନ କରନ୍ତି ।

ସେମାନେ ଆପଣାକୁ ଜଗତରେ ନିକୃଷ୍ଟତମ ବୋଲି ଜ୍ଞାନ କରନ୍ତି ଏବଂ ଅନ୍ୟମାନଙ୍କୁ ସୁଖୀ ବୋଲି ଈର୍ଷା କରନ୍ତି । x x x'

କିନ୍ତୁ ୱାର୍ଡସ୍‌ୱାର୍ଥଙ୍କ ପରି ମଧୁସୂଦନ ପ୍ରତିମୁହୂର୍ତ୍ତରେ ଏହି ସ୍ୱାଭାବିକ ଜଡ଼ତା ଓ ବିଷାଦବାଦରୁ ମୁକ୍ତି ଲଭିବାକୁ ଲୋଡ଼ିଛନ୍ତି । ଏମାନେ ସହଜରେ ଏ ବିଷାଦବାଦକୁ ସ୍ୱୀକାର କରିବାକୁ ଯାଇ ନାହାନ୍ତି । x x x ଶେଲୀ, ରାଧାନାଥଙ୍କ ପରି ଏମାନେ ଜଗତରେ ବିଭ୍ରାଟ ଓ ବିଶୃଙ୍ଖଳା ଦେଖିବାକୁ ପାଇ ନାହାନ୍ତି । ସକଳ ସ୍ଥଳରେ ଏମାନେ ସୌନ୍ଦର୍ଯ୍ୟ ଓ ସାମଞ୍ଜସ୍ୟ ଦେଖିବାକୁ ପ୍ରୟାସୀ । x x x

ଜୀବନରେ ଆନନ୍ଦ ଅଛି, ଆରାମ ଅଛି, କିନ୍ତୁ ଆମ୍ଭମାନଙ୍କର ସୀମାବଦ୍ଧ ଓ ଅପୂର୍ଣ୍ଣ ଜୀବନ ହିଁ ତାହାର ଅନ୍ତରାୟ ହୋଇ ରହିଛି । ମନୁଷ୍ୟ ସାଧନା ବଳରେ ଏହି ଆନନ୍ଦର ଅଧିକାରୀ ହୋଇପାରେ ଏହା ମଧୁସୂଦନଙ୍କ ବିଶ୍ୱାସ; କିନ୍ତୁ ରାଧାନାଥ ଏ ବିଷୟରେ ହତାଶ ହୋଇ ପଡ଼ିଛନ୍ତି । ମନୁଷ୍ୟର ଏପରି ଅନେକ ଅପୂର୍ଣ୍ଣତା ରହିଛି, ଯାହା ଅତିକ୍ରମ କରିବା ଅସମ୍ଭବ । ସେଥିଲାଗି ସେ ମାନବ ଜୀବନକୁ ଚିରହାହାକାରମୟ କରି ଦେଖିଛନ୍ତି ।

କାଳିନ୍ଦୀଚରଣ 'ଭକ୍ତକବି ମଧୁସୂଦନ' ପ୍ରବନ୍ଧରେ ରାଧାନାଥ ଓ ମଧୁସୂଦନଙ୍କ ସାହିତ୍ୟ ଓ ସେମାନଙ୍କ ଦୃଷ୍ଟି ଓ ଦର୍ଶନକୁ ତୁଳନା କରିଥିବାରୁ ପ୍ରବନ୍ଧଟିର ବିଚାରବିଶ୍ଳେଷଣ ଅତ୍ୟନ୍ତ ତୀକ୍ଷ୍ଣ ଓ ନିରପେକ୍ଷ ହୋଇପାରିଛି । ଏପ୍ରକାର ସମାଲୋଚନାରେ ସମାଲୋଚକ କାଳିନ୍ଦୀଚରଣ ମଧୁସୂଦନଙ୍କ ସହିତ ରାଧାନାଥଙ୍କୁ ତୁଳନା କରିବାକୁ ଯାଇ ରାଧାନାଥଙ୍କ ତ୍ରୁଟି ବିଚ୍ୟୁତିକୁ ଚିହ୍ନଟ କରିଥିଲେ ହେଁ ସେ କବିବରଙ୍କ ପ୍ରତି ନିଜର ଶ୍ରଦ୍ଧା ଊଣା କରି ନାହାନ୍ତି ।

ସେହିପରି 'ମଥୁରାମଙ୍ଗଳ ସମାଲୋଚନା' ତାଙ୍କର ଆଉ ଏକ ସାହିତ୍ୟିକ ସମାଲୋଚନାମୂଳକ ସୁଲିଖିତ ପ୍ରବନ୍ଧ । ଏଥିପାଇଁ ସେ ଆଠମଲ୍ଲିକ ରାଜାଙ୍କ ଦ୍ୱାରା ୧୯୨୪ରେ ପୁରସ୍କାର ଲାଭ କରିଥିଲେ । କାଳିନ୍ଦୀଚରଣଙ୍କ ଏହି ପ୍ରବନ୍ଧଟି ବିଶ୍ୱନାଥ କରଙ୍କ ସମ୍ପାଦିତ ଉତ୍କଳ ସାହିତ୍ୟ ମାସିକ ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧଟି ଓଡ଼ିଶାର ଅନ୍ୟତମ ବିଶିଷ୍ଟ ବୈଷ୍ଣବ କବି ତଥା ମଥୁରାମଙ୍ଗଳ କାବ୍ୟର ପ୍ରଣେତା ଭକ୍ତକବି ଭକ୍ତଚରଣ ଦାସଙ୍କ କୃତିତ୍ୱ ସମ୍ପର୍କରେ ଏକ ପ୍ରାମାଣିକ ତଥା ପୂର୍ଣ୍ଣାଙ୍ଗ ଆଲୋଚନା । ଏହି ଆଲୋଚନାଟି ପୁଣି ପରବର୍ତ୍ତୀ ସମୟରେ କାଳିନ୍ଦୀରଚନାଚୟ ଦ୍ୱିତୀୟ ଭାଗରେ ସ୍ଥାନିତ ହୋଇଛି ।

ମଥୁରାମଙ୍ଗଳର କବି ଭକ୍ତଚରଣ ଦାସଙ୍କ କୃତିତ୍ୱକୁ ସମାଲୋଚକ କାଳିନ୍ଦୀଚରଣ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । ମଥୁରାମଙ୍ଗଳ କାବ୍ୟର ପରିକଳ୍ପନା ପାଇଁ ତାଙ୍କୁ ବସ୍ତୁତଃ ସମାଲୋଚକ କାଳିନ୍ଦୀଚରଣ ଏକ ମହାନ୍ କବିର ଆଖ୍ୟା ଦେଇଛନ୍ତି । ମଥୁରାମଙ୍ଗଳର କେତେକ ଅଂଶକୁ ଯଥାର୍ଥରେ ସେ ଗେଟେ, ପୋପ୍, କୁପର ଆଦି ପାଶ୍ଚାତ୍ୟ କବି ଓ ଲେଖକଙ୍କ ରଚନାବଳୀ ସହିତ ତୁଳନା କରିଛନ୍ତି । ମଧ୍ୟଯୁଗରେ ଭକ୍ତଚରଣ ଦାସଙ୍କ ପରି ଜଣେ କବିଙ୍କ ଦ୍ୱାରା ରଚିତ ମଥୁରାମଙ୍ଗଳ କାବ୍ୟଟିକୁ ବିଶ୍ୱସାହିତ୍ୟ ପରିପ୍ରେକ୍ଷୀରେ ଚର୍ଚ୍ଚା କରିବା ଯେପରି ଅଭିନବ ସେହିପରି ବିଶେଷ ପ୍ରଣିଧାନଯୋଗ୍ୟ । ମଥୁରାମଙ୍ଗଳ କାବ୍ୟ ତଦାନୀନ୍ତନ ଆଳଙ୍କାରିକ

କାବ୍ୟ-ପରମ୍ପରାରେ ଆଦୌ ମଳିନ ହୋଇଯାଇନାହିଁ ବୋଲି ସମାଲୋଚକ କାଳିନ୍ଦୀଚରଣ ମତବ୍ୟକ୍ତ କରିଛନ୍ତି । ଏତେ ସରଳ ଭାଷାରେ ଏପରି ପ୍ରଭାବପୂର୍ଣ୍ଣ କାବ୍ୟ ରଚନା କରିବା ଭକ୍ତଚରଣ ଦାସଙ୍କ ବିଶେଷ ପ୍ରତିଭା ଓ ପାରଦର୍ଶିତାର ବିଷୟ ବୋଲି ସେ ଉଲ୍ଲେଖ କରିଛନ୍ତି । ଉକ୍ତ ମଥୁରାମଙ୍ଗଳ କାବ୍ୟରେ ଶିଶୁଠାରୁ ଆରମ୍ଭ କରି ସ୍ତ୍ରୀ ଯୁବକ ବୃଦ୍ଧପର୍ଯ୍ୟନ୍ତ ସକଳ ସମାଜରେ ଉତ୍କଳର ଆଉ କେଉଁ କାବ୍ୟ ଏତେଦୂର ପ୍ରତିଷ୍ଠା ଲାଭ କରିପାରିନାହିଁ । ଭାଷା, ଭାବ ବର୍ଣ୍ଣନା, ଛନ୍ଦ, ଶବ୍ଦ ଯୋଜନା, ଚରିତ୍ର ଚିତ୍ରଣ, ବୀର, କରୁଣ, ବାତ୍ସଲ୍ୟାଦି ରସ, ନୀତି, ଧର୍ମ ପ୍ରଭୃତି ଯାହାକିଛି ଆଦର୍ଶ କାବ୍ୟର ଲକ୍ଷଣ ସେ ସମସ୍ତ ମଥୁରାମଙ୍ଗଳରେ ଏକାଧାରରେ ବିଦ୍ୟମାନ । କାଳିନ୍ଦୀଚରଣ ଯଥାର୍ଥରେ ଲେଖିଛନ୍ତି, 'ଏହାର ଯାହା ଅବା ତ୍ରୁଟି ସେ କେବଳ ଏହି ପୂର୍ଣ୍ଣତା ବିଧାନରେ ହିଁ ସହାୟତା କରିଅଛି । ମଥୁରାମଙ୍ଗଳକୁ ପୂର୍ଣ୍ଣରୂପେ ଅନୁଭବ କରିବା ସମୟରେ କବି ଭକ୍ତଚରଣଙ୍କ ସାହିତ୍ୟ ଉପେନ୍ଦ୍ର ପ୍ରଭୃତିଙ୍କ ସାହିତ୍ୟ ଦୀପ୍ତିରେ ମଳିନ ନୁହେଁ, ତାହା ଚିର ଜାଜ୍ୱଲ୍ୟମାନ ଉତ୍କଳ ସାହିତ୍ୟ ଭଣ୍ଡାରରେ ମୁକ୍ତାସ୍ୱରୂପ ।'

କାଳିନ୍ଦୀଚରଣଙ୍କ ସାହିତ୍ୟ ସମାଲୋଚନାସବୁ ବ୍ୟକ୍ତିଗତ ଶ୍ରଦ୍ଧା ନିବେଦନରେ ଅଧିକ ମୁଖର । ସେ ଓଡ଼ିଶାର ପ୍ରାଦେଶିକ ସାହିତ୍ୟ ସମ୍ପର୍କିତ ଆଲୋଚନା ସହିତ ବିଶ୍ୱସାହିତ୍ୟର ଆଲୋଚନା କରିଛନ୍ତି । ଅଧିକାଂଶ ସମାଲୋଚନା ତାଙ୍କର ବ୍ୟକ୍ତିନିଷ୍ଠ ଓ ତୁଳନାତ୍ମକ । ସାହିତ୍ୟ ଆଲୋଚନାରେ ସେ କଳା ଓ ସଂସ୍କୃତିର ପ୍ରାସଙ୍ଗିକତାକୁ ଏଡ଼ାଇଦେଇ ଯାଇନାହାନ୍ତି । ଓଡ଼ିଶାର କଳା ସଂସ୍କୃତି ତଥା ଧର୍ମ ଓ ଜାତୀୟତା ସମ୍ପର୍କରେ ସେ ଅତ୍ୟନ୍ତ ସାବଲୀଳ ଭାଷାରେ ବର୍ଣ୍ଣନା କରି ପ୍ରବନ୍ଧମାନ ରଚନା କରିଛନ୍ତି ।

ତାଙ୍କର ଅନ୍ୟ ଏକ ପ୍ରବନ୍ଧ ହେଉଛି ଫକିରମୋହନଙ୍କ ଚରିତ୍ର ଚିତ୍ରଣ । କାଳିନ୍ଦୀଚରଣ ଫକିରମୋହନଙ୍କ ଗଳ୍ପ-ଉପନ୍ୟାସରେ ସଂଯୋଜିତ ଗୌଣ ଚରିତ୍ର ସବୁକୁ ଆଦୌ ଗୌଣ ମନେକରି ନାହାନ୍ତି, ବରଂ ଏହି ଗୌଣ ଚରିତ୍ର ଚିତ୍ରଣରେ ଫକିରମୋହନଙ୍କ କୃତିତ୍ୱ ନିହିତ ବୋଲି ଫକିରମୋହନ ସାହିତ୍ୟ ଆଲୋଚନା କରି କାଳିନ୍ଦୀଚରଣ ଯଥାର୍ଥ ମନ୍ତବ୍ୟ ଦେଇଛନ୍ତି । ଫକିରମୋହନଙ୍କ ନାୟକ ନାୟିକା ଚରିତ୍ର ଏହି ଗୌଣ ଚରିତ୍ର ଯୋଗୁଁ ହିଁ କେବଳ ଅଧିକ ବିକଶିତ ହୋଇ ପାରିଛନ୍ତି ବୋଲି ସମାଲୋଚକ କାଳିନ୍ଦୀଚରଣଙ୍କ ମତ । ଫକିରମୋହନଙ୍କ ସାହିତ୍ୟରେ ଚିତ୍ରିତ ଚରିତ୍ର ସମୁଦାୟ ଓଡ଼ିଶାର ଅଖ୍ୟାତ ପଲ୍ଲୀର ପରିବେଶକୁ ଜୀବନ୍ତ କରିପାରିଛି ବୋଲି ସମାଲୋଚକ କାଳିନ୍ଦୀଚରଣ ମତବ୍ୟକ୍ତ କରିଛନ୍ତି । କାଳିନ୍ଦୀଚରଣ ଯଥାର୍ଥରେ କହିଛନ୍ତି, 'ଏହି ଗୌଣ ଚରିତ୍ରମାନଙ୍କ ସ୍ୱାତନ୍ତ୍ର୍ୟ କେବଳ ନାମରେ ନୁହେଁ ଗୁଣରେ ମଧ୍ୟ ପରିସ୍ଫୁଟ ।'

ସମାଲୋଚକ କାଳିନ୍ଦୀଚରଣ ପାଣିଗ୍ରାହୀ ତାଙ୍କର 'ସାମୟିକ ସାହିତ୍ୟ ସମୀକ୍ଷା' ଗ୍ରନ୍ଥରେ ଗଳ୍ପ, ଉପନ୍ୟାସ, କାବ୍ୟ, କବିତା, ପତ୍ର-ପତ୍ରିକା, ଓଡ଼ିଆ ସାହିତ୍ୟର ସାହିତ୍ୟିକ ଯୁଗ, ସାହିତ୍ୟ ତତ୍ତ୍ୱ, ସାହିତ୍ୟ ସମସ୍ୟା, ଆନ୍ତର୍ଜାତୀୟ ପଟ୍ଟଭୂମି, ପ୍ରତିବେଶୀ ସାହିତ୍ୟ ଓ ବହୁବିଶ୍ୱ-ପ୍ରସିଦ୍ଧ ସାହିତ୍ୟିକଙ୍କ ସମ୍ପର୍କରେ ସମାଲୋଚନା ଲେଖିଛନ୍ତି ।

ଏଇ ସମାଲୋଚନାଗୁଡ଼ିକ କାଳିନ୍ଦୀଚରଣଙ୍କ ବ୍ୟକ୍ତିଗତ ପ୍ରବନ୍ଧ (Personal Essay) । କାଳିନ୍ଦୀଚରଣ ଜଣେ ବିଶିଷ୍ଟ ସାହିତ୍ୟିକଭାବେ ନିଜର ସାହିତ୍ୟିକ ରୁଚିର ପରିଚୟ ଦେବା ସଙ୍ଗେ ସଙ୍ଗେ ଯୁକ୍ତିନିଷ୍ଠ ବିଚାର ଉପସ୍ଥାପନ କରିଛନ୍ତି ।

କାଳିନ୍ଦୀଚରଣ ଅଶ୍ଳୀଳତା ସମ୍ପର୍କରେ ମଧ୍ୟ ଆଲୋଚନା କରିଛନ୍ତି । ଉତ୍ତାଙ୍କ କାବ୍ୟ ନାଟକରେ ଅଶ୍ଳୀଳତାର କିଞ୍ଚିତ ସ୍ଥାନ ଥିଲେ ବି, ତାହା ମୁଖ୍ୟ ନୁହେଁ ବୋଲି ସେ ବର୍ଣ୍ଣନା କରିଛନ୍ତି । ସାହିତ୍ୟ ପତ୍ର-ପତ୍ରିକାର ପ୍ରକାଶନଗତ ଅନିୟମିତତା ତଥା ସମ୍ପାଦନାର ଦୋଷତ୍ରୁଟି ସମ୍ପର୍କରେ ସେ ଆଲୋଚନା କରିଛନ୍ତି । ତାଙ୍କ ସମୟରେ ଆଧୁନିକ ଗଦ୍ୟ ଛନ୍ଦ ନୂଆକରି ଓଡ଼ିଆ ସାହିତ୍ୟରେ ପ୍ରଚଳିତ ହେଉଥିଲା । କାଳିନ୍ଦୀଚରଣ ସେ ବିଷୟରେ ନିଜର ମତ ଓ ମନ୍ତବ୍ୟ ଦେଇଛନ୍ତି ।

କାଳିନ୍ଦୀଚରଣ ଓଡ଼ିଶାର ଜାତୀୟ ଜୀବନ ତଥା ସାରସ୍ୱତ ପରମ୍ପରା ସମ୍ପର୍କରେ ନିଜର ଚିନ୍ତା ପ୍ରକଟନ କରିଛନ୍ତି । ସେ ପୃଥିବୀର ପରିବର୍ତ୍ତିତ ଇତିହାସ ସମ୍ପର୍କରେ ଆଲୋକପାତ କରିଛନ୍ତି ଓ ଓଡ଼ିଶାର ଲୁପ୍ତ ସାହିତ୍ୟ ପତ୍ରିକା ସମ୍ପର୍କରେ ଚିନ୍ତାବ୍ୟକ୍ତ କରିଛନ୍ତି । ସମ୍ପାଦକମାନେ ସେମାନଙ୍କ ଦାୟିତ୍ୱ ସୁଚାରୁରୂପେ ନିର୍ବାହ କରୁନାହାନ୍ତି ବୋଲି ସେ ଖେଦ ପ୍ରକାଶ କରିଛନ୍ତି ।

କାଳିନ୍ଦୀଚରଣ ଶିଷ୍ଟାଚାର ଓ ସୁରୁଚି ସମ୍ପର୍କରେ ଆଲୋଚନା କରି ସବୁ ପ୍ରକାରର ସାହିତ୍ୟ ଅଧିକ ରୁଚିପୂର୍ଣ୍ଣ ହେଉ ବୋଲି ଯୁକ୍ତି ବାଢ଼ିଛନ୍ତି । କଥାଚିତ୍ର ଓ ଆକାଶବାଣୀର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଷୟ ମଧ୍ୟ ସେ ଆଲୋଚନା କରିଛନ୍ତି ।

ବିଶ୍ୱନାଥ କର, ଜଳନ୍ଧର ଦେବ, ହାସ୍ୟରସିକ ଗୋପାଳଚନ୍ଦ୍ର ପ୍ରହରାଜ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଦିବ୍ୟସିଂହ ପାଣିଗ୍ରାହୀ, ଶଶିଭୂଷଣ, ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପର୍କରେ ସେ କ୍ଷୁଦ୍ର କ୍ଷୁଦ୍ର ପ୍ରବନ୍ଧମାନ ରଚନା କରିଛନ୍ତି । ତାଙ୍କର 'ସାମୟିକ ସାହିତ୍ୟ ସମୀକ୍ଷା' ପୁସ୍ତକଟି ବସ୍ତୁତଃ ବହୁ କ୍ଷୁଦ୍ର କ୍ଷୁଦ୍ର ପ୍ରବନ୍ଧରେ ଭରି ।

ନୂଆ ମଣିଷ, ଶୁଭମିଳନ, ନୂତନ ମନୁଷ୍ୟ, ପ୍ରେମର ପ୍ରଭାବ, ଆଧୁନିକ ପ୍ରଗତିଶୀଳ, ପ୍ରାଚୀନ ପ୍ରଗତି, କୌଳିକ ସାହିତ୍ୟ, ପାଶ୍ଚାତ୍ୟ ପ୍ରଗତିର ନିର୍ମାତା, ରକ୍ଷଣଶୀଳତା ଓ ପ୍ରଗତିଶୀଳତା, ନିର୍ମାଣ ଓ ଧ୍ୱଂସ, ରକ୍ଷଣଶୀଳତାର ସ୍ୱରୂପ, ବୈଦେଶିକ, କାରାବାସର ବନ୍ଧୁ, ସୌନ୍ଦର୍ଯ୍ୟରେ ସାମଞ୍ଜସ୍ୟ ଆଦି ଉଚ୍ଚ ସାହିତ୍ୟ ଚିନ୍ତାଯୁକ୍ତ କ୍ଷୁଦ୍ର କ୍ଷୁଦ୍ର ଆଲୋଚନାମୂଳକ ପ୍ରବନ୍ଧମାନ ସେ ଲେଖିଛନ୍ତି ।

ଆଞ୍ଚଳିକ ସାହିତ୍ୟ, ଭାରତୀୟ ସାହିତ୍ୟ, ସାହିତ୍ୟିକ ଦୃଷ୍ଟିଭଙ୍ଗୀ, ଲେଖକର ଉପାୟ, ନୂତନ ସାହିତ୍ୟ, ସାହିତ୍ୟର ଯୋଜନା, ସାହିତ୍ୟ ଓ ବିପ୍ଳବ ଆଦି ଶୀର୍ଷକରେ କାଳିନ୍ଦୀଚରଣ ନିଜର ସାହିତ୍ୟିକ ଅଭିମତ ପ୍ରଦାନ କରିଛନ୍ତି ।

କାଳିନ୍ଦୀଚରଣ ଓଡ଼ିଶାର ଜଣେ ବିଶିଷ୍ଟ ରୋମାଣ୍ଟିକ କବି ହୋଇଥିଲେ ହେଁ ସେ ତାଙ୍କ ସାହିତ୍ୟିକ ଅଭିରୁଚିରେ ଜଣେ ବାସ୍ତବବାଦୀ ତଥା ପ୍ରଗତିବାଦୀ ସାହିତ୍ୟିକ ଭାବରେ ମତବ୍ୟକ୍ତ

କରିଛନ୍ତି । ତାଙ୍କ ସାହିତ୍ୟ ଚେତନା ଯେତିକି ଆଞ୍ଚଳିକ ଥିଲା, ତା'ଠୁ ଅଧିକ ଥିଲା ଜାତୀୟ ଓ ଆନ୍ତର୍ଜାତୀୟ ।

କାଳିନ୍ଦୀଚରଣ ଟଲଷ୍ଟୟ, ରବୀନ୍ଦ୍ରନାଥ, ସ୍ପେଣ୍ଡର ପ୍ରମୁଖ ବିଶ୍ୱପ୍ରସିଦ୍ଧ ସାହିତ୍ୟିକଙ୍କ ମୌଳିକତା ସମ୍ପର୍କରେ ଆଲୋଚନା କରିଛନ୍ତି । ସେ ଉକ୍ତ 'ସାମୟିକ ସାହିତ୍ୟ ସମୀକ୍ଷା' ପୁସ୍ତକରେ ସୋଭିଏତ୍ ଦେଶର ସାହିତ୍ୟାଦର୍ଶ ସହିତ ଟଲଷ୍ଟୟଙ୍କ ଉପରେ ଅଧିକ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିଛନ୍ତି ।

ଏହି ବହୁଦର୍ଶୀ ସାହିତ୍ୟସ୍ରଷ୍ଟା କବି, ଗାଳ୍ପିକ ଓ ଔପନ୍ୟାସିକ ଭାବେ ତାଙ୍କ ପାଠକ ପାଠିକାଙ୍କ ସପକ୍ଷରେ ଯେପରି ପ୍ରତିଷ୍ଠିତ ଜଣେ ସାହିତ୍ୟ ସମାଲୋଚକଭାବେ ମଧ୍ୟ ସେହିପରି ସୁପରିଚିତ ।

# ଆତ୍ମଜୀବନୀକାର କାଳିନ୍ଦୀଚରଣ

କାଳିନ୍ଦୀଚରଣଙ୍କ ସୁଦୀର୍ଘ ଜୀବନ ତାଙ୍କ ଅତିକ୍ରାନ୍ତ ବୟସରେ ରଚିତ 'ଅଙ୍ଗେ ଯାହା ନିଭାଇଛି' ଗ୍ରନ୍ଥରେ ରୂପାୟିତ ହୋଇଛି । 'ଅଙ୍ଗେ ଯାହା ନିଭାଇଛି' ଗ୍ରନ୍ଥଟି କାଳିନ୍ଦୀଚରଣଙ୍କ ବେଶ୍ ଭାବପୂର୍ଣ୍ଣ ଆତ୍ମଜୀବନୀ ।

କାଳିନ୍ଦୀଚରଣଙ୍କ ପରି ଜଣେ ଏକାନ୍ତ ଶୈଶବ ପ୍ରତି ସମ୍ମୋହିତ, ଅତୀତପ୍ରିୟ କବିଙ୍କ ଆତ୍ମଜୀବନୀ ଯେପରି କାବ୍ୟିକ ଓ ଭାବନିଷ୍ଠ ହେବା କଥା ତାହାହିଁ ହୋଇଛି । ଖ୍ରୀ ୧୯୦୧ରୁ ୧୯୭୨ ପର୍ଯ୍ୟନ୍ତ ସମୟ ସୀମା ଭିତରେ କାଳିନ୍ଦୀଚରଣ ତାଙ୍କର ଜୀବନ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି । ତାଙ୍କ ସୁମଧୁର ଶୈଶବ ବର୍ଣ୍ଣନାରେ ସେ ଅଧିକ ମୁଖର ହୋଇଛନ୍ତି । ତାଙ୍କ କାବ୍ୟକବିତା, ଗଳ୍ପ ଉପନ୍ୟାସରେ ନିଜର ଗତାୟୁ ଅତୀତକୁ ଯେପରି ସମ୍ମୋହିତ ହୋଇ ଲେଖିଛନ୍ତି ତାଙ୍କ ଆତ୍ମଜୀବନ ଚରିତ 'ଅଙ୍ଗେ ଯାହା ନିଭାଇଛି' ସେଥିରୁ ବିଚ୍ୟୁତ ନୁହେଁ ।

ନିଜ ବିଷୟରେ କାଳିନ୍ଦୀଚରଣ ନିଜେ ଲେଖିଛନ୍ତି - 'ଯୋଗାଇ ଆସିଛି ମୋତେ ଦୁନିଆକୁ ଆପଣାର କରି ପାଇବା ପାଇଁ ବିପୁଳ ବିଶ୍ୱାସ । ଇଚ୍ଛା କିଂବା ଅନିଚ୍ଛାରେ ଯେତେ ଶତ୍ରୁ ବା ଯେତେ ବନ୍ଧୁ ଅର୍ଜିଲି, ସମସ୍ତଙ୍କୁ ଭଲପାଇବାରେ ହିଁ ନିଃଶେଷ ହେଉ ମୋର ଅନ୍ତିମ ନିଃଶ୍ୱାସ । ଦୁନିଆକୁ ଭଲପାଇବା ଅପେକ୍ଷା ଆଉ ବଡ଼ ହୋଇ କିଛି ହେଲେ ନାହିଁ । ପୃଥିବୀ-ଜୟୀ ଆଲେକଜାଣ୍ଡାର ଖାଲି ହାତରେ ପରା ଦୁନିଆରୁ ଶେଷ ବିଦାୟ ନିଅନ୍ତି ? ମୋର ଦୁଇ ହାତକୁ କିନ୍ତୁ ପୂର୍ଣ୍ଣ କରିବାକୁ ଲୋଡ଼େ ମୁଁ କେବଳ ସ୍ନେହ, ପ୍ରେମ ଓ ପ୍ରାଣରେ । ଏହି ଉପାୟରେ ହିଁ ଆଲେକଜାଣ୍ଡାରଙ୍କ ଠାରୁ ବଡ଼ ବିଜୟୀ ହେବାକୁ ମୋର ବିଶ୍ୱାସ ରହିଛି ବୋଲି ପାଠକମାନଙ୍କୁ ନହସିବା ପାଇଁ ଅନୁରୋଧ ।

ଜଣେ ସଚ୍ଚା କବି ବା କଳାକାର ପ୍ରଜ୍ଞା ଓ ସୁନ୍ଦରର ପ୍ରେମିକ ହୋଇଥାନ୍ତି । ପ୍ରଜ୍ଞା ମଣିଷକୁ ସମୁନ୍ନତ ବୋଧ ଓ ଅନୁଭବ ଆଡ଼େ ନେଇଯାଏ ଓ ସୁନ୍ଦର ମଣିଷର ସ୍ୱପ୍ନ ଓ ସୃଜନଶୀଳତାକୁ ଆହୁରି ମାର୍ମିକ କରେ । କାଳିନ୍ଦୀଚରଣଙ୍କ ସମଗ୍ର ବ୍ୟକ୍ତିତ୍ୱଟି ଛଳଛଳ ଓ ଆବେଗନିଷ୍ଠ । ଅତି ଶୈଶବରୁ ସେ ସାହିତ୍ୟ ସାଧନା କରି ଆସିଛନ୍ତି । ସାହିତ୍ୟ ଥିଲା ତାଙ୍କ ଜୀବନର ସ୍ୱପ୍ନ ଓ ସୁଦୂରର ବିଷୟ ।

ତାଙ୍କ ଜୀବନରେ ଅନେକ ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ସେ ସାହିତ୍ୟ ସାଧନାକୁ ନିଜ ଜୀବନର ଏକାନ୍ତ ଅନୁରାଗମୟ ବିଷୟ ବୋଲି ଗ୍ରହଣ କରିଥିଲେ । ୧୯୩୦ ଖ୍ରୀ.ରେ ସେ ଓଡ଼ିଆ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ 'ସବୁଜ ସାହିତ୍ୟ ସମିତି' ଗଢ଼ିଥିଲେ; ଯାହା ଓଡ଼ିଶାରେ ନୂତନ ସାହିତ୍ୟାଦର୍ଶ ସୃଷ୍ଟି କରିବାରେ ସହାୟକ ହୋଇଥିଲା ।

କାଳିନ୍ଦୀଚରଣଙ୍କ ଏହି ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି' ପ୍ରଥମେ ୧୯୨୫ ମସିହାରୁ କଳନା ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶିତ ହୋଇ ଆସୁଥିଲା । ଏହାକୁ

ନିୟମିତ ପ୍ରକାଶ କରିବା ପାଇଁ ତଥା ପୁସ୍ତକ ଆକାରରେ ମୁଦ୍ରିତ କରିବା ପାଇଁ ଅନେକ ବନ୍ଧୁ ଓ ଶୁଭେଚ୍ଛୁ କାଳିନ୍ଦୀଚରଣଙ୍କୁ ପତ୍ର ଲେଖି ଜଣାଇଥିଲେ ।

'ଜୀବନ ବ୍ୟାପୀ ବହୁ ଘଟଣା ଦୁର୍ଘଟଣା ଓ ଏକାଧିକ ବନ୍ଧୁ ସ୍ୱଜନଙ୍କ ସ୍ନେହ, ସାହଚର୍ଯ୍ୟ, ସ୍ପର୍ଶ-ଆଘାତ, ଅବହେଳା-ଅନୁକମ୍ପା, ଈର୍ଷା-ପ୍ରେମରେ ଗଢ଼ା ଏଇ ଜୀବନର ସମସ୍ତ ତ୍ରୁଟି ଓ ସାଫଲ୍ୟ ଲିପିବଦ୍ଧ କରିବା ଅବଶ୍ୟ ସମ୍ଭବପର ନୁହେଁ । କାଳିନ୍ଦୀଚରଣ ତେଣୁ ତାଙ୍କ ଜନ୍ମସ୍ଥାନ ଗାଁର କେତେ ଜୀବିତ ବା ମୃତ କୁଟୁମ୍ବଙ୍କର ଛଦ୍ମନାମ ଦେଇ ତାଙ୍କ ଆତ୍ମଜୀବନୀ ଲେଖିଛନ୍ତି ।

ତାଙ୍କ ବିଚାର ଓ ଉପଲବ୍ଧିକୁ ସେ ନିର୍ଭୁଲ ଓ ଚରମ ବୋଲି ଆଦୌ ଜ୍ଞାନ କରି ନାହାନ୍ତି । ଏଥିରେ କିଛି ଦ୍ୱିରୁକ୍ତି ଓ ଅତିରଞ୍ଜନ ଥିବା କଥା ମଧ୍ୟ କାଳିନ୍ଦୀଚରଣ ତାଙ୍କ ଆତ୍ମଜୀବନୀର ପ୍ରାକ୍‌ଭାଷରେ ଉଲ୍ଲେଖ କରିଛନ୍ତି ।

ସେ ତାଙ୍କର ସାହିତ୍ୟିକ ତଥା ଚାକିରି ଜୀବନରେ ଘଟିଥିବା ବହୁ ଘଟଣାବଳୀକୁ ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି । ତାଙ୍କ ପିଲାଦିନ ଅତି ଚମତ୍କାର ଭାବେ ବର୍ଣ୍ଣିତ ହୋଇଛି ଏଥିରେ । ପ୍ରଥମେ ଗାଁ ଚାଟଶାଳୀକୁ ଯାଇ ମାଟିବଂଶ ଅବଧାନଙ୍କଠାରେ କିପରି '୦' ଅକ୍ଷର ଲେଖିଥିଲେ ତା'ର ମଧୁର ସ୍ମୃତି ସେ ରୋମନ୍ଥନ କରିଛନ୍ତି ଯେପରି ।

ସେ ଲେଖିଛନ୍ତି - 'ଆଜି ମଧ୍ୟ ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ କାଳପରେ ସେହି ଅନୁଭୂତିକୁ ଫାଉଣ୍ଟେନପେନ୍ ଧରି ଲେଖିଲାବେଳେ ମୋର ହାତ ଉପରେ ପ୍ରଥମ ଅକ୍ଷର ଶିକ୍ଷକଙ୍କର ସେଇ କର୍କଶ ପାପୁଲିଟା ଯେମିତି ନିର୍ମମ ଭାବରେ ଶିଖାଇ ଲାଗିଛି, ରୂପହୀନ ନିରାକାର ତିନିଟା ଶୂନ୍ୟ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ।

ଆଜି ମଧ୍ୟ କଲମ ଛାଡ଼ି, ଘରଛାଡ଼ି ପାଠଶାଠ ଛାଡ଼ି କୁଆଡ଼େ କେଜାଣି ପଳାଇ ଯିବାକୁ ମନ ମୋର ବ୍ୟାକୁଳ । ଅଥଚ ସେଇ ଅଦୃଶ୍ୟ ଓଜନଦାର କର୍କଶ ପାପୁଲିଟା ହିଁ ହାତଟାକୁ ମୋର ଘୋଷାରି ନେଇ ପୁଣି ଯେମିତି ଘୋଷାଉଛି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର - ସୃଷ୍ଟି, ସ୍ଥିତି, ପ୍ରଳୟ - ସବୁ ଖାଲି ମୋଟେ ଶୂନ - ସବୁ ପାଠ, ସବୁ ଶାସ୍ତ୍ର, ସବୁ ଭାଷା, ସବୁ ଭାଷ୍ୟ, ସବୁ ଜ୍ଞାନ, ସବୁ ବିଜ୍ଞାନ ।

ତାଙ୍କ ଚାଟଶାଳୀ ଯିବା ସ୍ମୃତିକୁ ମନେପକାଇ କାଳିନ୍ଦୀଚରଣ ପିଲାମାନଙ୍କ ପାଇଁ ସରଳ ଓ ସୁନ୍ଦର ଛନ୍ଦବଦ୍ଧ କବିତାଟିଏ ଲେଖିଥିଲେ ।

'ମନେ ଅଛି ମୋର ଗ୍ରାମ ଚାଟଶାଳୀ
ଚିହ୍ନିଥିଲି ଯହିଁ ଅକ୍ଷର ଆଗେ
ସରୁଦାଣ୍ଡ କଡ଼େ ଚାଳଘର ଖଣ୍ଡି
ଯାଇଥିଲି ଦିନେ ବାପାଙ୍କ ସାଙ୍ଗେ ।'

x x x x x

ଗୁରୁ ସହପାଠୀ	କେ ଗଲେଣି କାହିଁ
ଗୋଟି ଗୋଟି ତାହା ପଡ଼ୁଛି ମନେ
ହସିଥିଲି କେଉଁ	ବିଲ ପାହାଡ଼ରେ
କାନ୍ଦିଥିଲି ଆମ୍ବ ପୁନ୍ନାଗବନେ ।
ମନ୍ଦିର ସମାନ	ଗ୍ରାମ ଚାଟଶାଳୀ
ସବୁ ସ୍ମୃତି ପରେ ଟେକିଛି ମଥା
ଶିଖିଥିଲି ଯହିଁ	ପ୍ରଥମ ଅକ୍ଷର
ପଢ଼ିଥିଲି ଯହିଁ ପ୍ରଥମ କଥା ।'

ଦୀର୍ଘଦିନ ଧରି କାଳିନ୍ଦୀଚରଣ ନିଜକୁ ପାଠ୍ୟପୁସ୍ତକ ରଚନା କାର୍ଯ୍ୟରେ ନିୟୋଜିତ କରିଥିଲେ । ଏହା ଥିଲା ବରଂ ତାଙ୍କର ଅନ୍ୟତମ ଯୋଗ୍ୟତାର ବିଷୟ । ପାଠ୍ୟ ପୁସ୍ତକ ରଚନା ଜରିଆରେ କାଳିନ୍ଦୀଚରଣ ବରଂ ଅନ୍ୟମାନଙ୍କ ଅପେକ୍ଷା ଅଳ୍ପ ସମୟ ମଧ୍ୟରେ ଅଧିକ ପରିଚିତ ହୋଇପାରିଲେ । କାଳିନ୍ଦୀଚରଣ ସେତକ ସମୟରେ ଅଧିକ ସୃଜନଶୀଳ ସାହିତ୍ୟ ରଚନା କରିପାରିଥାନ୍ତେ ବୋଲି କେତେକ ଅବଶ୍ୟ ସେତେବେଳେ ଚିନ୍ତା କରିଛନ୍ତି । ନିଆଁ ଖୁଣ୍ଟା ପତ୍ରିକାର ସଂପାଦକ ଗୋଦାବରୀଶ ମହାପାତ୍ର ତାଙ୍କର ଗୋଟିଏ କବିତାରେ 'ଆହେ କାଳିନ୍ଦୀ ହେଲ କି ବନ୍ଦୀ ପାଠ୍ୟ-ପୁସ୍ତକ ରଚନାରେ' ତାଙ୍କ ପ୍ରତି ବ୍ୟଙ୍ଗୋକ୍ତି ପ୍ରକାଶ କରିଥିଲେ ।

କାଳିନ୍ଦୀଚରଣ ତାଙ୍କ ଆତ୍ମଜୀବନୀକୁ ଆପଣା ଜୀବନର ମଧୁମୟ ଦିନସବୁର ଏକ ସ୍ମୃତିଗ୍ରନ୍ଥ କରି ପରିବେଷଣ କରିଛନ୍ତି । ଜଣେ ସୃଜନଶୀଳ ମଣିଷ ତା'ର କବିଚିତ୍ତ ଦେଇ ଯେତେବେଳେ ତା'ର ସ୍ମୃତିସ୍ନିଗ୍ଧ ମଧୁର ଅତୀତକୁ ସ୍ମରଣକରେ ସେତେବେଳେ ତାହା ସ୍ୱତଃ ଆହୁରି ସୁନ୍ଦର ଓ ମାର୍ମିକ ହୋଇପଡ଼େ । ସେ ତାଙ୍କର ମଧୁମୟ ଶୈଶବର ଦିନସବୁକୁ ଅଧିକ ମନଦେଇ ଲେଖିଛନ୍ତି ଯେପରି । ତାଙ୍କ ଆତ୍ମଜୀବନୀରୁ 'ମତେ ସତ ତୁମକୁ ମିଛ', 'ମ୍ୟାଉଁ ମ୍ୟାଉଁ, ଦୁଧଭାତ ଗୁଣ୍ଡିଏ ଦେଉଁ', 'ଉଠ ନିଶି ପାହିଲା ଏଥର', 'ଖେଳୁଆଡ଼ ବୁଦ୍ଧି ଛାଡ଼ରେ ବାବୁ', 'ପୁଅଟିଏ ପୁଅଟିଏ', 'ଏ ଜଗତ ମୋର ଗାଁ', 'ଅଲିଭା ଦାଗ', 'ପ୍ରହାରେଣ ଧନଞ୍ଜୟ' ଆଦି ଶୀର୍ଷକରେ କାଳିନ୍ଦୀଚରଣ ତାଙ୍କ ମଧୁର ସ୍ମୃତିସ୍ନିଗ୍ଧ ଶୈଶବକୁ ଯେପରି ମନେ ପକାଇଛନ୍ତି ତାହା ଯେକୌଣସି ସୃଜନଶୀଳ ସାହିତ୍ୟଗ୍ରନ୍ଥ ପରି ସ୍ୱାଦ୍ୟ ହୋଇଛି ।

ସେ ଲେଖିଛନ୍ତି, 'ପ୍ରତି ମୁହୂର୍ତ୍ତରେ ନିତି ନୂଆ ନୂଆ ଅସରନ୍ତି ଘଟଣାପ୍ରବାହ ଭିତରେ ଭାସିଚାଲେ ଏଇ ଜୀବନ । ପ୍ରତି ମୁହୂର୍ତ୍ତର ସବୁ କଥା ଟିପି ରଖିଲେ ତ ନିଅଣ୍ଟ ଧରେ ଏ ଦୁନିଆ ଯାକର ସ୍ୟାହି କାଗଜ । ପୁଣି ଗଲା କଥାଗୁଡ଼ିକରୁ କେତୋଟି ଆଜି ବା ସ୍ମୃତି ପଟରେ ଅଲିଭା ହୋଇ ରହିପାରେ ? ଆରମ୍ଭ ତା'ର କେଉଁଠି - କାହିଁ ପୁଣି ତା'ର ଶେଷ ? ମୂଳ କିଏ ଆଗ କିଏ ? ଅକଳନ କାଳ ବକ୍ଷରେ ଊର୍ଦ୍ଧ୍ୱମୂଳ ଅଧଃଶାଖା ହୋଇ ତାହା ଯେମିତି ଦ୍ରୁମାୟିତ ଲତାୟିତ ପୁଣି ପୁଷ୍ପାୟିତ ତହିଁରୁ କେତୋଟି ଫୁଲ ବା ତୋଳି ଆଣି ପାରି କି ଭାଷାରେ ମୁଁ

ସଜାଇ ରଖିବି ? ନା ବାଛି ଦେବି କେଉଁ ରଙ୍ଗ ଆଉ ରୂପର ? କେଉଁ ହସ କେଉଁ କାନ୍ଦର ? କେଉଁ ଭୟ ଅବା ବିସ୍ମୟର ?

ତାଙ୍କ ଲେଖକ ଜୀବନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତାଙ୍କ ପାଠକମାନଙ୍କଠାରୁ କେତେ ଓ କିପରି ନିନ୍ଦା ପ୍ରଶଂସା ଶୁଣିଛନ୍ତି ଓ ସେ ନିନ୍ଦା ପ୍ରଶଂସା ସବୁକୁ ସେ କିପରି ଗ୍ରହଣ କରିଛନ୍ତି, ତା'ର ଏକ ସରସ ତାଲିକା ସେ ତାଙ୍କ ଆତ୍ମଜୀବନୀ ଚରିତ 'ଅଙ୍ଗେ ଯାହା ନିଭାଇଛି'ରେ ଦେଇଛନ୍ତି । ତାଙ୍କୁ ପ୍ରଶଂସା କରି ତାଙ୍କର ଜଣେ ପାଠକ ଲେଖିଥିଲେ - 'ଆପଣଙ୍କ ଜୀବନ କଥା 'ଯାହା ଅଙ୍ଗେ ନିଭାଇଛି' ଓଡ଼ିଆ ଜୀବନର ଆଉ ଏକ ଅନ୍ତରଙ୍ଗ ଚିତ୍ର ଅଙ୍କନ କରୁଛି । ଏହା ଆସନ୍ତା ବର୍ଷରେ ପୂର୍ଣ୍ଣ ହେଉ, ଏହାର ସାହିତ୍ୟିକ ସଫଳତା ଓଡ଼ିଆ ସର୍ଜନ ସାହିତ୍ୟକୁ ବିଶ୍ୱ ସାହିତ୍ୟ ଅଙ୍ଗନରେ ନୂତନ ଗୌରବ ଦାନକରୁ, ଏହାହିଁ ମୋର ଅନ୍ତରଙ୍ଗ କାମନା । ସତରେ କାଳିନ୍ଦୀଚରଣଙ୍କ ଆତ୍ମଲିପି ଓଡ଼ିଶାର ସାମାଜିକ ଜୀବନର ଏକ ଶୈଳ୍ପିକ ଦଲିଲ । ଏକ ଶୈଳୀପୂର୍ଣ୍ଣ ପ୍ରକାଶ । ତାଙ୍କ ଆତ୍ମଜୀବନୀ ପଢ଼ି କେବଳ ତାଙ୍କ ଘର ଗାଁକୁ ନୁହେଁ ଓଡ଼ିଶାର ସବୁଘର ସବୁ ଗାଁକୁ ଅନୁଭବ କରିହୁଏ । ଆମ ଗାଁର ଚଳଣି, ପର୍ବପର୍ବାଣି ଋତୁବଦଳିବା, ଗାଁର ଚାଷବାସ, ସେହିପରି ଆହୁରି ଯେତେ ଭଲମନ୍ଦ କାଳିନ୍ଦୀଚରଣଙ୍କ ଆତ୍ମଲିପିରେ ବେଶ୍ ଚମତ୍କାର ଭାବେ ବିନ୍ୟସ୍ତ ହୋଇଛି । ତାଙ୍କ ଆତ୍ମଜୀବନୀ ପଢ଼ି ଜଣେ ଓଡ଼ିଶାର ପୁରପଲ୍ଲୀ ଓ ତା'ର ପୁରପଲ୍ଲୀ ଓ ତା'ର ପର୍ବପର୍ବାଣିକୁ ଯେଭଳି ଅନୁଭବ କରେ ଜଣେ ସଂଗ୍ରାମଶୀଳ ମଣିଷର ଜୀବନ ବଞ୍ଚିବାର କାହାଣୀକୁ ସେହିପରି ପଢ଼େ ।

୧୯୧୨ ଖ୍ରୀଷ୍ଟାବ୍ଦରେ କାଳିନ୍ଦୀଚରଣ ପୁରୀ ଭ୍ରମଣରେ ଆସିଥିବା କଥା ତାଙ୍କ 'ଅଙ୍ଗେ ଯାହା ନିଭାଇଛି'ରେ ଉଲ୍ଲେଖ କରିଛନ୍ତି । ତା'ର ଦୁଇବର୍ଷ ପରେ ପୃଥିବୀରେ ଭୟାବହ ବିଶ୍ୱଯୁଦ୍ଧ ଲାଗିଯାଇଥାଏ । ଲେନିନ୍ ଏ ଯୁଦ୍ଧକୁ ଅର୍ଥନୈତିକ ଯୁଦ୍ଧ ବୋଲି ଘୋଷଣା କରିଥାନ୍ତି । ଖୁବ୍ ଅଳ୍ପ ବୟସରେ କାଳିନ୍ଦୀଚରଣ ପୁରୀ ଜଗନ୍ନାଥ ଧାମରେ ଥାଇ ଭୟାବହ ଯୁଦ୍ଧର ସ୍ମୃତି କଥାକୁ ତାଙ୍କ ଆତ୍ମଲିପିରେ ଲେଖିଛନ୍ତି । ଚାହୁଁ ଚାହୁଁ ପୁରୀରେ ଲୁଗାପଟା ଦର ବଢ଼ିଯାଏ । ସେଥିସଙ୍ଗେ ଆଉ ସବୁ ବିଦେଶୀ ଜିନିଷର ମଧ । କିଛି ଦାର୍ଶନିକ ଅଟୋପର ପ୍ରଦର୍ଶନ ନକରି କୌଣସି ଜ୍ଞାନ ବିଜ୍ଞାନର ଚର୍ଚ୍ଚା ନକରି ସେ ତାଙ୍କ ଶୈଶବକୁ ନିଷ୍କପଟ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ଆତ୍ମଲିପିର ଗୋଟିଏ ବଡ଼ ବିଶେଷତ୍ୱ ହେଉଛି ତାଙ୍କ କବି ଜୀବନର ବହୁ ଉଲ୍ଲେଖଯୋଗ୍ୟ ଘଟଣାକୁ ରୂପାୟିତ କରିବା । ସେ ଉଭୟ ଗଦ୍ୟ ଏବଂ ପଦ୍ୟର ଯେଉଁ ରଚନାମାନ ଲେଖିଛନ୍ତି ତା'ର ମୂଳ ପ୍ରେରଣା ସେ କେଉଁଠୁ କିପରି ପାଇଲେ, ସେ ବିଷୟ ସେ ଗୋଟି ଗୋଟି କରି ତାଙ୍କ ଆତ୍ମଜୀବନୀରେ ଲିପିବଦ୍ଧ କରିଛନ୍ତି । କବି କାଳିନ୍ଦୀଚରଣଙ୍କ ମୟୂରଭଞ୍ଜ ଅବସ୍ଥିତି ତାଙ୍କୁ ତାଙ୍କର ପ୍ରସିଦ୍ଧ 'ପାସୋରି ଦେଲିରେ ଶିମୁଳିପାଳ' କବିତା ରଚନା କରିବା ପାଇଁ ପ୍ରୋତ୍ସାହିତ କରିଥିଲା । କାଳିନ୍ଦୀଚରଣ ଲେଖିଛନ୍ତି - ମୟୂରଭଞ୍ଜ ଅବସ୍ଥିତି ମୋର କିନ୍ତୁ ପ୍ରାରମ୍ଭରେ ଯେତିକି

ସୁଖକର ଆଶା, ଆନନ୍ଦ ଓ ଉତ୍ସାହର କାରଣ ହୋଇଥିଲା ତାହାର ଶେଷ ଭାଗଟା ସେତିକି କରୁଣ, ଦୁଃଖଦ ଓ ଅନ୍ଧକାରମୟ ହୋଇପଡ଼େ । ଅବିକଳ ମିଳନାନ୍ତକ ଓ ବିୟୋଗାନ୍ତକ ନାଟକ ଭଳି । ମିଳନ ବିଚ୍ଛେଦର ସମସ୍ତରରେ ଅନୁଭୂତିହିଁ ଯେ ସାହିତ୍ୟ । ବାରିପଦାରେ କନିଷ୍ଠ ଭଗବତୀଙ୍କ ବିବାହ ଓ ଦୁଇଟି ସନ୍ତାନ ଜନ୍ମ, ସେଇଠାରେ ହିଁ ବାପ ମା' ଭାଇ ଭଉଣୀ ଝିଆରୀ ପୁତୁରାଙ୍କ ମିଳନ କୋଳାହଳ ସଙ୍ଗେ ବିଚ୍ଛେଦ ଦୁଃଖର ଅଭିନୟ । ଜୀବନବ୍ୟାପୀ ଏଇ ଆଲୁଅ-ଛାଇର ଖେଳ ଭିତରେ ଯେପରି ମୁଁ ଗତିକରି ଆସିଛି, ଆଜି ତାହା ପ୍ରତି ସିଂହାବଲୋକନ କଲାବେଳେ ସେହି ପରିମାଣରେ କି ତହୁଁବଳି ବିହ୍ୱଳ-ବିସ୍ମୟରେ ଅଭିଭୂତ ହୁଏ । ବାରିପଦାରେ ଶିମୁଳିପାଳ ପର୍ବତମାଳାକୁ ଦୂରରୁ ଚାହିଁ କାଳିନ୍ଦୀଚରଣ ଲେଖିଛନ୍ତି :-

'କି ଗୀତ ତୋ ଆଗେ ଗାଇବି କହରେ ଶିମୁଳିପାଳ
ରକତ ମୋହର ବରଫ ହାଡ଼ ଯେ ହୋଇଛି ପାଣି
କଣ୍ଠେ ଶୁଖିଛି ରସନା ବାସନା ନଆସେ କଥା
କ୍ଷୁଧିତ ମାନବ କାକୁତି କରଇ ପକାଇଥାଳ
ପଥ ପରେ ଶତ ମାନବର ଶିଶୁ ଦେଖାଏ କାନି
ଅକାଳେ ଝାଉଁଳି ପଡ଼ଇ କେତେରେ ଜୀବନଲତା
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତକାଳ
ତୋତେ ଚାହିଁ ଆଜି ପାସୋରି ଦେଲିରେ ଶିମୁଳିପାଳ ।'

ପାରିବାରିକ ଜୀବନର ଆନନ୍ଦ ଉଲ୍ଲାସ କେତେ ସେ ଅନୁଭବ କରିଛନ୍ତି ତାଙ୍କ ପ୍ରାଣରେ, ଓଡ଼ିଶାର କେତେ ଜନପଦରେ । ତା'ପରେ ୧୯୩୫ ଖ୍ରୀଷ୍ଟାବ୍ଦରେ ଗଢ଼ିଉଠିଥିବା ନବଯୁଗ ସାହିତ୍ୟ ସଂସଦର ସଭାପତି ଭାବେ କାଳିନ୍ଦୀଚରଣ ଯେଉଁ ଅଭିଭାଷଣ ଦେଇଥିଲେ, ତାହା ସେ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ନୀଳକଣ୍ଠ ଏହି ନବଯୁଗ ସାହିତ୍ୟ ସଂସଦ ପ୍ରତିଷ୍ଠାର ପ୍ରଶଂସା କରିଥିଲେ । ନବଯୁଗ ସାହିତ୍ୟ ସଂସଦର ବହୁ ଆଲୋଚନା ସେତେବେଳେ ପଣ୍ଡିତ ନୀଳକଣ୍ଠଙ୍କ ସମ୍ପାଦିତ ମାସିକ ସାହିତ୍ୟ ପତ୍ର ନବଭାରତ ପତ୍ରିକାରେ ପ୍ରକାଶିତ ହେଉଥିଲା । ତା'ପରେ ଏହି ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ' ମାସିକ ସାହିତ୍ୟ ପତ୍ରିକା ରୂପେ ପ୍ରକାଶିତ ହେଲା । ଏହି ପତ୍ରିକାରେ କାଳିନ୍ଦୀଚରଣଙ୍କ 'ସବୁଠାରେ ସମ୍ଭବ' ସାମାଜିକ ନାଟକ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ହରିହର ମହାପାତ୍ର, କବି ବୈକୁଣ୍ଠନାଥ ପଟ୍ଟନାୟକ, ଡକ୍ଟର ସଦାଶିବ ମିଶ୍ର, ଡକ୍ଟର ହରିବନ୍ଧୁ ମହାନ୍ତି, ଅନନ୍ତ ପଟ୍ଟନାୟକ, କାଳିନ୍ଦୀଚରଣଙ୍କ ଅନୁଜ ଭଗବତୀଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ଗୋପୀନାଥ ମହାନ୍ତି ତଥା ସଚ୍ଚିଦାନନ୍ଦ

ରାଉତରାୟ ପ୍ରମୁଖ ନବଯୁଗ ସାହିତ୍ୟ ସଂସଦର ଆଲୋଚନା ଚକ୍ରରେ ପ୍ରବନ୍ଧପାଠ କରୁଥିଲେ । ଏହି ନବଯୁଗ ସାହିତ୍ୟ ସଂସଦ ଓଡ଼ିଶାର ଏକ ଅଗ୍ରଗାମୀ ଅନୁଷ୍ଠାନ ରୂପେ ପରିଗଣିତ ହେଉଥିଲା । ଏହି ନବଯୁଗ ସାହିତ୍ୟ ସଂସଦ ପକ୍ଷରୁ ୧୯୩୬ ଖ୍ରୀଷ୍ଟାବ୍ଦରେ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ପଣ୍ଡିତ ନେହେରୁ ସେଇ ସମ୍ବର୍ଦ୍ଧନାର ଉତ୍ତର ଦେଇ କହିଥିଲେ- 'ପୃଥିବୀ ଆଗରେ ଆଜି ବହୁ ସମସ୍ୟା ଶିରୋଉତ୍ତଳନ କରିଛି । ଦେଶର ଯୁବକମାନଙ୍କ କର୍ତ୍ତବ୍ୟ ହେଉଛି ସେଗୁଡ଼ିକର ସନ୍ଧାନ ନେବା, ତାକୁ ବିଶ୍ଳେଷଣ କରି ଦେଖି ମନୁଷ୍ୟ ପରି ତା'ର ସମ୍ମୁଖୀନ ହେବା । ଖାଲି ତୁଣ୍ଡ ଗୋଳ ବା ସ୍ଲୋଗାନରେ କିଛି ଲାଭ ହେବ ନାହିଁ । ଜଗତ ଉପରେ ଏକ୍ଷଣି ବିପ୍ଲବାତ୍ମକ ପରିବର୍ତ୍ତନର ସ୍ରୋତ ବହିଯାଉଛି । ଏହି ବିକ୍ଷୋଭମୂଳକ ଆନ୍ଦୋଳନ ସମ୍ଭବ ହୋଇଛି ସୁଗଭୀର ସ୍ୱତଃସ୍ଫୂର୍ତ୍ତ ପ୍ରାକୃତିକ କାରଣ ଯୋଗୁଁ; ଏଣୁ ତୁମକୁ ଆଜି ଅନୁଧ୍ୟାନ କରିବାକୁ ହେବ ଏ ପୃଥିବୀ ଥିଲା କ'ଣ ଓ ଅଛି କେଉଁ ଅବସ୍ଥାରେ ।'

କାଳିନ୍ଦୀଚରଣ ଯେତେବେଳେ ମୟୂରଭଞ୍ଜରେ ଅବସ୍ଥାନ କରୁଥିଲେ ସେତେବେଳେ ସେ ଭଞ୍ଜ ପ୍ରଦୀପ ପ୍ରକାଶନ ସହ ସଂଶ୍ଳିଷ୍ଟଥିଲେ । ଭଞ୍ଜ ପ୍ରଦୀପରେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ତଥା କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଲେଖା ପ୍ରକାଶିତ ହେଉଥିଲା । ଶିଳ୍ପୀ ବିଦ୍ୟାଧର ବର୍ମା ତଥା ଗୋପାଳ କାନୁନ୍‌ଗୋଙ୍କ ଚିତ୍ର ମଧ୍ୟ ତହିଁରେ ସ୍ଥାନିତ ହେଉଥିଲା । ସେତେବେଳେ କାଳିନ୍ଦୀଚରଣ ବାରିପଦା ସାହିତ୍ୟ ସମାଜ ଗଠନ କରି ଉକ୍ତ ସାହିତ୍ୟ ସମାଜରେ ଯୋଗଦାନ କରିବା ପାଇଁ ସାହିତ୍ୟିକ ଜଳନ୍ଧର ଦେବ ଓ ପଦ୍ମଚରଣ ପଟ୍ଟନାୟକ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ତଥା ଶଶିଭୂଷଣ ରାୟ ପ୍ରମୁଖଙ୍କୁ ନିମନ୍ତ୍ରଣ କରୁଥିଲେ । ସେମାନଙ୍କ ସାନ୍ନିଧ ଓ ଆଶୀର୍ବାଦ ଲାଭକରି କାଳିନ୍ଦୀଚରଣ ନାନାମତେ ଉତ୍ସାହିତ ହେଉଥିଲେ ଯେପରି । ଓଡ଼ିଶାର ବିଶିଷ୍ଟ କବି ଓ ଲେଖକ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସହିତ କାଳିନ୍ଦୀଚରଣଙ୍କ ସାକ୍ଷାତ-ଆଲୋଚନା ଅତ୍ୟନ୍ତ ନିବିଡ଼ ଓ ପ୍ରାଣପୂର୍ଣ୍ଣ ହୋଇଥିଲା । ଏଇ ଘଟଣାକୁ କାଳିନ୍ଦୀଚରଣ 'ସାଳନ୍ଦୀ କୂଳରେ କାଳିନ୍ଦୀ' ଶିରୋନାମାରେ ଲିପିବଦ୍ଧ କରିଛନ୍ତି ।

ଖ୍ରୀ ୧୯୩୯ରେ ପୁଣି ଓଡ଼ିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାହୁଏ । ୧୯୩୯ରେ ରବୀନ୍ଦ୍ରନାଥ ପୁରୀ ଆସିବା କଥା କାଳିନ୍ଦୀଚରଣ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ରବୀନ୍ଦ୍ରନାଥଙ୍କ ଜନ୍ମ ଉତ୍ସବ ଉପଲକ୍ଷେ ତାଙ୍କୁ ପୁରୀରେ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେ ଉପଲକ୍ଷେ ସେହି ସଭାରେ କାଳିନ୍ଦୀଚରଣ ଏକ କବିତା ପାଠ କରିଥିଲେ ।

'ଅନ୍ଧାରେ ଅଦ୍ଭୁତ ଆଲୁଅ' ଶିରୋନାମାରେ କାଳିନ୍ଦୀଚରଣ ତାଙ୍କ ସାନଭାଇ ଭଗବତୀ ଚରଣଙ୍କ ବିପ୍ଲବାତ୍ମକ କାର୍ଯ୍ୟକଳାପ ଯୋଗୁଁ କାଳିନ୍ଦୀଚରଣଙ୍କ ଚାକିରି ଚାଲିଯିବା କଥା ଉଲ୍ଲେଖ କରିଛନ୍ତି । ଓଡ଼ିଶାର ରାଜନୈତିକ ଜୀବନ ବହୁ ଭାବରେ ସେତେବେଳକୁ ଆନ୍ଦୋଳିତ ହେଉଥିଲା ଏବଂ ଓଡ଼ିଶାରେ ସାଂସ୍କୃତିକ ଓ ସାମାଜିକ ଜାଗରଣ ମଧ୍ୟ ପରିଦୃଷ୍ଟ ହେଉଥିଲା ।

କାଳିନ୍ଦୀଚରଣଙ୍କ କନ୍ୟା ନନ୍ଦିନୀ ମଧ୍ୟ ବାପା, ଦାଦାଙ୍କ ସହିତ ସାହିତ୍ୟ ଓ ସାଂସ୍କୃତିକ ସଂଗଠନରେ ଯୋଗଦାନ କରିଥିଲେ ।

ଭଗବତୀଚରଣ ପାଣିଗ୍ରାହୀଙ୍କ ମୃତ୍ୟୁ କାଳିନ୍ଦୀଚରଣଙ୍କ ଘଟଣାବହୁଳ ଜୀବନର ବହୁକଥା ସହିତ ନନ୍ଦିନୀଙ୍କ ନେତ୍ରୀ ହେବା ତଥା ଲେଖକ ସମ୍ମିଳନୀରେ ତାଙ୍କର ଯୋଗଦାନ ବିଷୟକୁ ନାନାଭାବରେ ସେ ତାଙ୍କ 'ଅଙ୍ଗେ ଯାହା ନିଭାଇଛି' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । 'ଅଙ୍ଗେ ଯାହା ନିଭାଇଛି' ଗ୍ରନ୍ଥଟି ତାଙ୍କ ନିଜର ଓ ତାଙ୍କ ନିଜ ପରିବାରର ଇତିହାସ କେବଳ ନୁହେଁ - ସମଗ୍ର ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ଘଟଣାବଳୀ ସେଥିରେ ଉଲ୍ଲିଖିତ ହୋଇଛି । ପରିଶେଷରେ ଏତିକି କୁହାଯାଇପାରେ ଯେ କାଳିନ୍ଦୀଚରଣଙ୍କ 'ଅଙ୍ଗେ ଯାହା ନିଭାଇଛି' ଗ୍ରନ୍ଥଟି ପାଠକଲେ କାଳିନ୍ଦୀଚରଣଙ୍କ ସାହିତ୍ୟିକ ଜୀବନର ନାନା ଘଟଣା ଓ ନାନା ସମସ୍ୟାକୁ ଜାଣିହେବ ।

# ଉପସଂହାର

କାଳିନ୍ଦୀଚରଣ ଯଦିଓ ସବୁଜ ଯୁଗର ଜଣେ ବିଶିଷ୍ଟ କବିଥିଲେ, ଜଣେ ଗାଳ୍ପିକ ଓ ଔପନ୍ୟାସିକ ଭାବେ ତାଙ୍କର ପ୍ରତିଷ୍ଠା ମଧ୍ୟ କମ୍ ନଥିଲା । ସେ ତାଙ୍କର ପ୍ରସିଦ୍ଧ ପୁରୀ ମନ୍ଦିର, ପାସୋରି ଦେଲିରେ ଶିମୁଳିପାଳ, ଯାଦୁଘର ଇତ୍ୟାଦି କବିତା ଲେଖି ଯେପରି ପାଠକମାନଙ୍କର ହୃଦୟ ସ୍ପର୍ଶ କରିଥିଲେ ମାଂସର ବିଳାପ ପ୍ରଭୃତି ଗଳ୍ପ ଲେଖି ମଧ୍ୟ ସେହିପରି ପାଠକମାନଙ୍କ ହୃଦୟ ଜୟ କରିଥିଲେ । ମାଟିର ମଣିଷ ଉପନ୍ୟାସ ତ ଓଡ଼ିଶାର ପୁରପଲ୍ଲୀରେ ଘରେ ଘରେ ପହଁଚି ଯାଇଥିଲା ।

ଓଡ଼ିଶାର ଏକ ସାହିତ୍ୟ ଆନ୍ଦୋଳନରେ ସେ ଥିଲେ ଜଣେ ଅଗ୍ରଣୀ କବି । ଓଡ଼ିଶାର ତାଙ୍କ ପରି କ୍ୱଚିତ୍ ସାହିତ୍ୟିକ ଅଛନ୍ତି, ଯାହାଙ୍କ ଲେଖା ପ୍ରାଥମିକ ଶ୍ରେଣୀଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ପଢ଼ାଯାଏ । ସବୁଜ ଯୁଗର ସେ ଥିଲେ ଜଣେ ପ୍ରମୁଖ ସାହିତ୍ୟିକ, ଯାହାଙ୍କ ଗଦ୍ୟ ପଦ୍ୟକୁ ଓଡ଼ିଶାର ତଳଶ୍ରେଣୀରୁ ଉପର ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଛାତ୍ରୀମାନେ ସମସ୍ତେ ପଢ଼ନ୍ତି ଓ ଆନନ୍ଦ ଲାଭ କରନ୍ତି ।

କାଳିନ୍ଦୀଚରଣ ଆନ୍ତର୍ଜାତିକ ଭାବଚେତନା ଓ ସାହିତ୍ୟାଦର୍ଶକୁ ତାଙ୍କ ସବୁଜ ସାହିତ୍ୟରେ ଯଥାସମ୍ଭବ ପ୍ରକଟନ କରିଯାଇଛନ୍ତି । ସେ ତାଙ୍କ କବିତାରେ କଥିତ ଭାଷାରେ ନୂତନ ଛନ୍ଦ ଓ ନୂତନ ସାଙ୍ଗୀତିକତାକୁ ପ୍ରୟୋଗ କରିଛନ୍ତି । ଏ ଦିଗରେ ତାଙ୍କ 'ଛୁରୀଟିଏ ଲୋଡ଼ା'ର କବିତା-ଗୁଡ଼ିକ ଯେପରି ଭାବ, ଭାଷା ଓ ଛନ୍ଦରେ ରସୋତ୍ତୀର୍ଣ୍ଣ ତାଙ୍କ 'ମାଟିର ମଣିଷ' ମଧ୍ୟ ଭାବ, ଭାଷା, ଚରିତ୍ର ଚିତ୍ରଣ ଓ ମହତ ଆଦର୍ଶ ପ୍ରତିଷ୍ଠାରେ ଏକ ସାର୍ଥକ କାଳଜୟୀ ଉପନ୍ୟାସ ରୂପେ ଆମ ସାହିତ୍ୟରେ ବଂଚି ରହିବ ।

କାଳିନ୍ଦୀଚରଣ ତାଙ୍କର ସତୀର୍ଥ ଅନ୍ନଦାଶଙ୍କର ଓ ଶରତଚନ୍ଦ୍ରଙ୍କ ପରି ସେତେବେଶୀ କଳ୍ପନାବିଳାସୀ ନଥିଲେ କି ବୈକୁଣ୍ଠନାଥଙ୍କ ପରି ଅତୀନ୍ଦ୍ରିୟ ଓ ରହସ୍ୟବାଦୀ ନଥିଲେ । କାଳିନ୍ଦୀଚରଣଙ୍କ ଭାବଧାରାରେ ସମାଜଚେତନା ଓ ମାନବତାବାଦୀ ଆଦର୍ଶ ଅଧିକ ପ୍ରତ୍ୟକ୍ଷ । ତାଙ୍କ ସାହିତ୍ୟାଦର୍ଶ ଅଧିକ ଭୂମିନିବଦ୍ଧ ଓ ମାନବୀୟ ସମସ୍ୟାଗୁଡ଼ିକ ସହିତ ଅଙ୍ଗୀକାରବଦ୍ଧ । 'ଯାଦୁଘର' କବିତାରେ ସେ ଲେଖିଛନ୍ତି -

'ଆଦିମ ଯୁଗରୁ ଦୁନିଆ ଭିତରେ ଗଢ଼ା ଯେତେ ସରକାର
ନିରେଖି ଚାହିଁଲେ, ସବୁଗୁଡ଼ିକତ ଧର୍ମର ଅବତାର ।
ଦୁନିଆଁ ଯାକର ମଣିଷ ପାଇଁ ତ ଧର୍ମ ନମିଳେ ଏକ
ସବୁ ପୂଜା, ସବୁ ଧିଆନ ଭଜନ ନୁହେଁକି ଭୋଜନ-ଭେକ ?

ସବୁ ଦେଶେ ଅବା ସମାନଧର୍ମ ସତ୍ୟ ଆସିବ କାହୁଁ
ସମାନ ନୁହେଁତ ପୋଷାକ, ଆହାର ସବୁଦେଶେ ଜଳବାୟୁ ।'

ଭାରତୀୟ ସାହିତ୍ୟରେ ଏହି ସବୁଜଯୁଗ ପରି ବଙ୍ଗଳାର କଲ୍ଲୋଳଯୁଗ, ହିନ୍ଦୀର ଛାୟାବାଦୀ ଯୁଗ ଓ ଗୁଜରାଟର ରବିକିରଣ ଗୋଷ୍ଠୀ ଆବିର୍ଭୂତ ହୋଇଥିଲା । ଓଡ଼ିଶାରେ ସବୁଜଯୁଗ ୧୯୨୧ରୁ ୧୯୩୫ ମସିହା ମଧ୍ୟରେ ସୀମିତ ଥିଲା । ସବୁଜମାନେ ସାମଗ୍ରିକଭାବେ ରବୀନ୍ଦ୍ରନାଥ ଓ ରବୀନ୍ଦ୍ରୋତ୍ତର ରୋମାଣ୍ଟିକ କାବ୍ୟଚେତନା ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ କାଳିନ୍ଦୀଚରଣ ଅନେକାଂଶରେ ଏହାର ବ୍ୟତିକ୍ରମ ଥିଲେ । କାଳିନ୍ଦୀଚରଣ ରବୀନ୍ଦ୍ରନାଥଙ୍କ ଦ୍ୱାରା କେତେକାଂଶରେ ଅବଶ୍ୟ ପ୍ରଭାବିତ ହୋଇଛନ୍ତି । ସେ ତାଙ୍କର ସତୀର୍ଥ ଅନ୍ୟସବୁଜ ବନ୍ଧୁମାନଙ୍କ ପରି କେବଳ ଯୌବନର ବନ୍ଦନାଗୀତ ନ ଗାଇ ମଣିଷର କଥା ହିଁ ଲେଖିଛନ୍ତି । ପୀଡ଼ିତ ମାନବାତ୍ମାର ମୁକ୍ତି ପାଇଁ ସେ ତାଙ୍କ ସାହିତ୍ୟରେ ସ୍ୱର ଉତ୍ତୋଳନ କରିଛନ୍ତି । ଧର୍ମ ଓ ସେହିପରି ଯାବତୀୟ ଅନ୍ଧବିଶ୍ୱାସ ମଣିଷକୁ ଆକ୍ରାନ୍ତ ନକରୁ ବୋଲି ସେ ଯୁକ୍ତି କରୁଥିଲେ; ଯାହାର ପ୍ରତିବଦ୍ଧ ଅଭିବ୍ୟକ୍ତି ତାଙ୍କର 'ପୁରୀମନ୍ଦିର' ଓ 'ଯାଦୁଘର' କବିତାରେ ପରିଲକ୍ଷିତ । 'ମାନବତାବାଦ, ମୋ ସାହିତ୍ୟର ଆଭିମୁଖ୍ୟ' ଶୀର୍ଷକ ଲେଖାରେ କାଳିନ୍ଦୀଚରଣ ତାଙ୍କ ବିଶ୍ୱାସ ଓ ରଚନାଦର୍ଶ ସମ୍ପର୍କରେ ଲେଖିଛନ୍ତି - 'ମୋର ମାଟିର ମଣିଷ ଉପନ୍ୟାସରେ ବ୍ରାହ୍ମଣ ହରି ମିଶ୍ରଠାରୁ ଚଷା ବରଜୁ ପଧାନ ସବୁ ଗୁଣ ସବୁ ଧର୍ମରେ କେତେ ବଡ଼, ତା'ର ସୂଚନା ମୁଁ ଦେଇଛି । ସାମାଜିକ ଜୀବନରେ ମୁଁ ଜାତି ଭେଦରେ ବିଶ୍ୱାସ କରେନି । ଯେଉଁ ଧର୍ମରେ ମୁଁ ବିଶ୍ୱାସ କରେ, ତାହା ସନାତନ ଧର୍ମ । ସବୁ ମଣିଷ, ସବୁ ଜାତି, ଭାଷାଭାଷୀମାନଙ୍କର ଧର୍ମ । ସେ ଧର୍ମର ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିୟାନ, ମୁସଲମାନ ପ୍ରଭୃତି ବିଭାଗୀକରଣର ସ୍ଥାନ ନାହିଁ । ଅଛି କେବଳ ସର୍ବମାନବୀୟ ଧର୍ମ ଯାହା ଯଥାର୍ଥରେ ବୌଦ୍ଧ ଅଶୋକ ପ୍ରତିଷ୍ଠା କରି ଯାଇଛନ୍ତି । ଯଥାର୍ଥ ସାହିତ୍ୟର ଏହାହିଁ ଆଭିମୁଖ୍ୟ । ସାହିତ୍ୟରେ ସର୍ବଧର୍ମ ସମନ୍ୱୟର ମାନବୀୟ ଧର୍ମ ହିଁ ମୋର ଏକମାତ୍ର ଲକ୍ଷ୍ୟ ଓ ଆଦର୍ଶ ।'

କାଳିନ୍ଦୀଚରଣ ଏକାଧାରରେ ଥିଲେ ଜଣେ ଯୁଗପ୍ରବର୍ତ୍ତକ ଅଗ୍ରଣୀ ସାହିତ୍ୟିକ, ଜଣେ ମାନବବାଦୀ କବି, ସମାଜ ସଚେତକ ଓ ଜୀବନବାଦୀ ଜଣେ ବିଶିଷ୍ଟ ଗାଳ୍ପିକ ଓ ଔପନ୍ୟାସିକ । ଆହୁରି ମଧ୍ୟ ସେ ଥିଲେ ଜଣେ ବିଶିଷ୍ଟ ସମାଲୋଚକ, ପ୍ରାବନ୍ଧିକ, ନାଟ୍ୟକାର ଓ ଜୀବନୀ ଲେଖକ ।

କାଳିନ୍ଦୀଚରଣ ହେଉଛନ୍ତି ଜଣେ ସବୁଜ କବି ଯେ କଳ୍ପନା ବିଳାସକୁ ପରିହାର କରି ମାନବପ୍ରେମୀ, ସଂସ୍କାରପ୍ରୟାସୀ ଓ ବିଦ୍ରୋହୀ ହୋଇଛନ୍ତି । ତାଙ୍କର କେତୋଟି କବିତା ପ୍ରଗତିବାଦୀ ଚେତନା ଦ୍ୱାରା ପୁଷ୍ଟ ହୋଇଛି ।

'ମଣିଷ, ମଣିଷ, ଶୁଭିଲା ଦୁଆରୁ ଡାକ
ଦୁନିଆରେ ଯେତେ ଦଳିତ ପୀଡ଼ିତ ଯାକ
ସ୍ପନ୍ଦନ ସେହି ପୁଲକ ପରାଣ ରେଖା
ବନ୍ଧୁର ପଥେ ବନ୍ଧୁ ସେ ମୋର ଏକା ।' - ଛୁରୀଟିଏ ଲୋଡ଼ା

କବିତାରେ କାଳିନ୍ଦୀଚରଣ ଯେତେ ଅଧିକ କଳ୍ପନାବାଦୀ, ହୁଏତ ସେ କ୍ଷୁଦ୍ରଗଳ୍ପରେ ସେତିକି ବାସ୍ତବବାଦୀ । ତାଙ୍କ ଗଳ୍ପ ଉପନ୍ୟାସ ତାଙ୍କ ଜୀବନବୋଧର ଏକ ଏକ କଳାତ୍ମକ ଆଲେଖ୍ୟ ଥିଲା ।

ଦୀର୍ଘ ଘଟଣାବହୁଳ ଜୀବନ ଅତିବାହିତ କରିଥିବା ଓଡ଼ିଶାର ବିଶିଷ୍ଟ କବି, ଔପନ୍ୟାସିକ, ଗାଳ୍ପିକ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର ଜୀବନ ଅବସାନ ଘଟେ ୧୯୯୧ ମସିହାରେ ।

# ସୃଷ୍ଟି-ସମ୍ଭାର

| | | | |
|---|---|---|---|
| ୧. | ମାଟିର ମଣିଷ | ୧୯୩୧ | (ଉପନ୍ୟାସ) |
| ୨. | ମୁକ୍ତାଗଡ଼ର କ୍ଷୁଧା | ୧୯୩୨ | ” |
| ୩. | ଅମର ଚିତା | ୧୯୩୩ | ” |
| ୪. | ଲୁହାର ମଣିଷ | ୧୯୪୭ | ” |
| ୫. | ଆଜିର ମଣିଷ | ୧୯୫୭ | ” |
| ୬. | ବାସନ୍ତୀ (ଆଂଶିକ) | | |
| ୭. | ଛୁରୀଟିଏ ଲୋଡ଼ା | | (କବିତା) |
| ୮. | ମନେନାହିଁ | | ” |
| ୯. | କ୍ଷଣିକ ସତ୍ୟ | | ” |
| ୧୦. | ମହାଦୀପ | | ” |
| ୧୧. | ଶେଷରଶ୍ମି | | ” |
| ୧୨. | ପ୍ରିୟଦର୍ଶୀ | | (ନାଟକ) |
| ୧୩. | ଦ୍ୱାଦଶୀ | | (ଗଳ୍ପଗ୍ରନ୍ଥ) |
| ୧୪. | ସାଗରିକା | | ” |
| ୧୫. | ଶେଷରଶ୍ମି | | ” |
| ୧୬. | ରାଶିଫଳ | | ” |
| ୧୭. | ମୋ କଥାଟି ସରିନାହିଁ | | ” |
| ୧୮. | ନେତୃତ୍ୱ ଓ ନେତୃତ୍ୱ | | (ଆଲୋଚନା ପୁସ୍ତକ) |
| ୧୯. | ପ୍ରବନ୍ଧ ସାହିତ୍ୟ | | ” |
| ୨୦. | ସାହିତ୍ୟ ସଞ୍ଚୟନ | | ” |
| ୨୧. | ସାମୟିକ ସାହିତ୍ୟ ସମୀକ୍ଷା | | ” |
| ୨୨. | ସାହିତ୍ୟିକ | | ” |
| ୨୩. | ପଦ୍ମିନୀ | | (ନାଟିକା) |
| ୨୪. | ସୌମ୍ୟା | | ” |
| ୨୫. | ଅଙ୍ଗେ ଯାହା ନିଭାଇଛି | ୧୯୭୩ | (ଆତ୍ମଜୀବନୀ) |
| ୨୬. | Glimpses of Art and Culture | | |

# ପ୍ରବନ୍ଧାବଳୀ

# ପତ୍ରିକା - ସଂପାଦନା

| | | |
|---|---|---|
| ୧. | ଭଞ୍ଜ ପ୍ରଦୀପ | |
| ୨. | ମୟୂରଭଞ୍ଜ କ୍ରନିକିଲ୍ | (ଇଂରାଜୀ) |
| ୩. | ସହକାର | (ନୂତନପ୍ରସ୍ଥ) |
| ୪. | ଯୁଗବୀଣା | (ସାମୟିକ ସଂପାଦନା) |
| ୫. | ଭାରତବର୍ଷ | (ଇଂରାଜୀ) |
| ୬. | ଅବକାଶ | (ହସ୍ତଲେଖା) |